ଚିକିତ୍ସକମାନଙ୍କ ଅବଗତ ପାଇଁ ଉଦ୍ଦିଷ୍ଟ

# ହାର୍ବୋ-ମିନରାଲ ଔଷଧ ପ୍ରୟୋଗବିଧି




କେ. ଆଣ୍ଡ କେ. ଡଚେନ୍
ଲାବୋରେଟରିଜ୍ (ପ୍ରା) ଲିମିଟେଡ୍
ରେସିଡେନ୍ସି ରୋଡ୍, ହାଇଦରାବାଦ,
ଦକ୍ଷିଣ ଭାରତ

# ହାର୍ବୋ-ମିନେରାଲ୍ ଔଷଧ ପ୍ରୟୋଗବିଧି

କେ. ଏଣ୍ଡ କେ. ଡିଚେନ୍

ଲ୍ୟାବୋରେଟରିଜ୍ (ପ୍ରା) ଲିମିଟେଡ୍

ରେସିଡେନ୍‌ସି ରୋଡ୍, ହାଇଦରାବାଦ (ଭାରତ)

ଶାଖା

ବମ୍ବେ, ଦିଲ୍ଲୀ

ଷ୍ଟକିଷ୍ଟ

ସମଗ୍ର ଭାରତରେ ନିଯୁକ୍ତ

# ଭୂମିକା

ଜେ. ଏଣ୍ଡ ଜେ. ଡିଚେନଙ୍କ ହାର୍ବୋମିନରାଲ (ଧାତବ ଓ ବନସ୍ପତିଜ) ଔଷଧ ପ୍ରୟୋଗବିଧି ପୁସ୍ତିକାର ପରିବର୍ତ୍ତିତ ସଂସ୍କରଣ ଆପଣମାନଙ୍କୁ ଯୋଗାଇବା ପାଇଁ ସୁଯୋଗ ପାଇଥିବାରୁ ଆମ୍ଭେମାନେ ବିଶେଷ ଆନନ୍ଦିତ । ବିଭିନ୍ନ ବୃକ୍ଷଲତା ଓ ଧାତୁ-ଭସ୍ମର ସୂକ୍ଷ୍ମାନୁସୂକ୍ଷ୍ମ ଚୂର୍ଣ୍ଣନଦ୍ୱାରା ଔଷଧୀୟ ଉପାଦାନର ଗୁଣକାରିତା ବୃଦ୍ଧି କରାଯାଇଥିବା ହେତୁ ଏହା ଖୁବ୍ ଅଳ୍ପ ପରିମାଣରେ ବ୍ୟବହାର କରାଗଲେ ମଧ୍ୟ ଆଶୁ ଫଳପ୍ରଦ ହୋଇଥାଏ । ଅଧିକନ୍ତୁ, ଏହାର ପ୍ରୟୋଗ ଦ୍ୱାରା ଅନ୍ୟ କୌଣସି ପ୍ରତିକ୍ରିୟା ଦେଖାଯାଏ ନାହିଁ । ଏହି ଔଷଧଗୁଡ଼ିକର ମୂଲ୍ୟ ଅତି କମ୍ ହୋଇଥିବାରୁ ଏହା ଦେଶର ବହୁଭାଗ ଲୋକ ଅନାୟାସରେ ବ୍ୟବହାର କରିଥାନ୍ତି ।

ଆଜକୁ ୬୦ ବର୍ଷ ପୂର୍ବେ ଭାରତବାସୀଙ୍କ ସେବାକରିବା ପାଇଁ ଡିଚେନ ଏହି ଔଷଧସମୂହର ପ୍ରଚଳନ ଆରମ୍ଭ କରିଥିଲେ । ବର୍ତ୍ତମାନ ଏହି ଔଷଧ ସହର ଓ ମଫସଲରେ ଯଥେଷ୍ଟ ଲୋକପ୍ରିୟତା ହାସଲ କରିବାକୁ ସମର୍ଥ ହୋଇଛି । ଏହି ଐତିହାସିକ କାରଣ ଯୋଗୁଁ ଆମ୍ଭେମାନେ ପ୍ରଭାବିତ ହୋଇ "ଭେଷଜ ପେଟିକା **(ଆବଶ୍ୟକ ସୂଚନା ପୁସ୍ତିକା ସହ)—ସମ୍ପୂର୍ଣ୍ଣ** ଚିକିତ୍ସାଳୟ" ଯୋଜନା କରିଛୁ । ଭାରତ ପରି ଏକ ବିରାଟ ଦେଶର ଜନସାଧାରଣଙ୍କ ଆବଶ୍ୟକତା ମେଣ୍ଟାଇବା ପାଇଁ ଭାରତର ଚଉଦଟି ଭାଷାରେ 'ଡିଚେନ ଔଷଧ ପ୍ରୟୋଗବିଧି ଓ ସମ୍ପୂର୍ଣ୍ଣ ଚିକିତ୍ସାଳୟ' ସୂଚନା ପୁସ୍ତିକା ପ୍ରକାଶ କରିଅଛୁ ।

ଏହି ଔଷଧସମୂହର ପ୍ରସାର କ୍ଷେତ୍ରରେ ଦେଶର ଚିକିତ୍ସକବର୍ଗଙ୍କ ନିବିଡ଼ ସହଯୋଗ ପାଇଥିବା ହେତୁ ସେମାନଙ୍କ ନିକଟରେ ଗଭୀର କୃତଜ୍ଞତା ଅର୍ପଣ କରୁଅଛୁ । ଜନସାଧାରଣଙ୍କ ସହ ଯଥାଯଥ ଯୋଗାଯୋଗ ରକ୍ଷାକରିବା ପାଇଁ ଦେଶରେ ତଥା ଦରିଆପାରି ଦେଶମାନଙ୍କରେ ବହୁ ଔଷଧ ବଣ୍ଟନକାରୀ (ଏଜେଣ୍ଟ) ନିଯୁକ୍ତ କରିଅଛୁ ।

ଏହି ଯୋଜନା ସତ୍ତ୍ୱେ ଆମର ସହୃଦୟ ଗ୍ରାହକମାନଙ୍କର କୌଣସି ଅସୁବିଧା ଘଟୁଥିବାର ଜଣାଇଲେ, ଆମେ ଯଥାଶୀଘ୍ର ଗ୍ରାହକମାନଙ୍କର ଚାହିଦା ମେଣ୍ଟନ କରିବା ପାଇଁ ଆବଶ୍ୟକ ବ୍ୟବସ୍ଥା ଗ୍ରହଣ କରିଥାଉ ।

---

# ସୂଚୀପତ୍ର



---

# ପ୍ରଥମ ଭାଗ

## ଅନୁକ୍ରମଣିକା

ଗାଁଗହଳର ସେବା କରିବା ଉଦ୍ଦେଶ୍ୟ ନେଇ ବିଗତ ୧୯୧୮ ମସିହାରେ ଡିଚେନ କମ୍ପାନୀ ପ୍ରତିଷ୍ଠା କରାଯାଇଥିଲା ।

ଏହା ଜଣାଶୁଣା କଥା, ଆମ ଦେଶର ଅଧିକାଂଶ ଅଞ୍ଚଳ ସାଧାରଣ ଚିକିତ୍ସା ସୁଯୋଗରୁ ବଞ୍ଚିତ । ଭାରତବର୍ଷରେ ପାଞ୍ଚ ଲକ୍ଷ ଗ୍ରାମ ଅଛି ଏବଂ ଦେଶର ଜନସଂଖ୍ୟାର ତିନିଭାଗ ଏହି ଗ୍ରାମାଞ୍ଚଳରେ ବାସକରନ୍ତି । ଦୀର୍ଘ ୬୦ ବର୍ଷ ହେଲା ଆମ୍ଭେମାନେ ଦେଶର ଏହି ବିରାଟସଂଖ୍ୟକ ଜନସାଧାରଣଙ୍କ ସ୍ୱାସ୍ଥ୍ୟବିଧାନ ପାଇଁ ସେମାନଙ୍କୁ ଶସ୍ତା, ନିରାପଦ ଔଷଧ ଯୋଗାଇ ଆସିଅଛୁଁ ।

ଡ଼ିଚେନ୍‌ଙ୍କର ବୈଶିଷ୍ଟ୍ୟ –

ରୋଗର ପ୍ରତିକାର କରିବାଠାରୁ ରୋଗକୁ ପ୍ରତିଷେଧ କରିବା ଯେ ଏକାନ୍ତ କାମ୍ୟ, ଏହା ପ୍ରତ୍ୟେକେ ସ୍ୱୀକାର କରିବେ । ଜନସାଧାରଣଙ୍କୁ ନିରୋଗ ରଖିପାରିଲେ, ସେମାନଙ୍କର ଯେ ଆର୍ଥିକ ଉନ୍ନତି ହେବ ଏହା ନିଃସନ୍ଦେହ । ଲୋକଙ୍କର ଚଳନମାନ ଉନ୍ନତ ହେଲେ ଦେଶରୁ ଅକାଳ ମୃତ୍ୟୁହାର କମାଇ ଦିଆଯାଇପାରିବ, ଏହା ଏକ ପ୍ରମାଣିତ ସତ୍ୟ । "ଭଗ୍ନ ସ୍ୱାସ୍ଥ୍ୟର ପୁନରୁଦ୍ଧାର", ବିଷୟରେ ଲିଖିତ ଆମର ପୁସ୍ତିକାଟି ପାଠ କରନ୍ତୁ । ଏହି ପୁସ୍ତିକାରେ ଖାଦ୍ୟର ପୁଷ୍ଟିକାରିତା ଓ ଜୀବନର ମୌଳିକ ନୀତି ବିଷୟରେ ଆଲୋଚନା କରାଯାଇଅଛି । ବିଶେଷତଃ ମଣିଷର ଜୀବନଧାରାକୁ ନିୟନ୍ତ୍ରଣ କରୁଥିବା ସ୍ନାୟବିକ ବିକାର ଓ ଜୀବନୀଶକ୍ତି ବିଷୟରେ ଉକ୍ତ ପୁସ୍ତକରେ ବିଶେଷ ବର୍ଣ୍ଣନା କରାଯାଇଅଛି । ଏହି ପୁସ୍ତିକା କୌଣସି ପାଠକ ଆବଶ୍ୟକକଲେ ଆମେ ଡାକରେ ପଠାଇ ଦେଇଥାଉଁ ।

ରୋଗର କାରଣ ଓ ନିରାକରଣ ବିଷୟରେ ଅନେକଙ୍କର ଯଥାର୍ଥ ଧାରଣା ନ ଥିବାରୁ ସେମାନେ ନିଜ ପାଇଁ ଓ ଅପର ପାଇଁ ଅଯଥା ସମସ୍ୟା ସୃଷ୍ଟି କରିଥାନ୍ତି । ନିଜର ସ୍ୱାସ୍ଥ୍ୟ ବିଷୟରେ ଯଥାର୍ଥ ଧାରଣା ରହିଲେ ଅନେକ ରୋଗକୁ ସହଜରେ ଦୂର କରିହେବ ।

ପ୍ରତି ରୋଗର କାରଣ ଅଛି—ମାତ୍ର ଗୋଟିଏ କାରଣ ଯୋଗୁଁ ପ୍ରତିରୋଗ ହୁଏନାହିଁ ବା ସେହି ଏକମାତ୍ର କାରଣ ଯୋଗୁଁ ସବୁ କ୍ଷେତ୍ରରେ ଏକା ପ୍ରକାରର ଲକ୍ଷଣ ପ୍ରକାଶ ପାଏ ନାହିଁ କିମ୍ବା ସେହି ସେହି ରୋଗ ଲକ୍ଷଣ ଏକା କାରଣ ଯୋଗୁଁ ପ୍ରକାଶ ପାଇ ନ ଥାଏ ।

ସ୍ଥୂଳତଃ ତଳଲିଖିତ କାରଣମାନଙ୍କ ମଧ୍ୟରୁ ଗୋଟିଏ ବା ଦୁଇଟିର ସଂମିଶ୍ରଣ ହେତୁ ଅଧିକାଂଶ ରୋଗ ଲକ୍ଷଣ ପ୍ରକାଶ ପାଇଥାଏ ।

୧ । ପୁଷ୍ଟିକର ଖାଦ୍ୟର ଅଭାବ । ପରିପାକ ଶକ୍ତିର ଅଭାବ, ଖାଦ୍ୟସାରର ଅନ୍ତଃ ଶୋଷଣ କାର୍ଯ୍ୟରେ ବାଧା ।

୨ । ମାନସିକ ତଥା ସ୍ନାୟୁଗତ ବିଶୃଂଖଳା ।

୩ । ରକ୍ତର ସ୍ୱାଭାବିକ ଚିତ୍ର ( Blood Picture )ର ପରିବର୍ତ୍ତନ ।

ମାନସିକ ତଥା ସ୍ନାୟୁମଣ୍ଡଳୀର ବିକୃତି ଯୋଗୁଁ ଅନ୍ତକ୍ଷତ ହୋଇପାରେ, ପାରିବାରିକ ଅଶାନ୍ତିଯୋଗୁଁ ଛାତିର ଯକ୍ଷ୍ମାରୋଗ ହୋଇପାରେ । ମାନସିକ ଜଞ୍ଜାଳ ଯୋଗୁଁ ଚିରକାଳୀନ ରୋଗ ହେବା ସମ୍ଭବପର । ଯଥାର୍ଥ ପରିପାକ ଶକ୍ତି ଅଭାବରୁ ଓ ସ୍ନାୟୁଗତ କାରଣରୁ ଆଖି ରୋଗ ଜନ୍ମିପାରେ । ରକ୍ତଚିତ୍ରର ଅସ୍ୱାଭାବିକ ପରିବର୍ତ୍ତନ ମଧ୍ୟ ଚକ୍ଷୁ ରୋଗର କାରଣ ହୋଇପାରେ । ଉପରୋକ୍ତ କାରଣମାନଙ୍କ ମଧ୍ୟରୁ ଗୋଟିଏ ବା ଦୁଇଟି ବା ତିନିଟିର ସଂଯୋଗ ଯୋଗୁଁ ମଣିଷ ଶରୀରର ଯାବତୀୟ କ୍ରିୟା ବିଶୃଂଖଳ ହୋଇପାରେ । ସ୍ନାୟବିକ ବିକାର ବା ରକ୍ତଚିତ୍ରର ବିଷମତା ଯୋଗୁଁ ମଧ୍ୟ ଦନ୍ତରୋଗ ଜନ୍ମିପାରେ ।

## ରୋଗୀର ଶାରୀରିକ ଗଠନ ଓ ପ୍ରକୃତି ନିର୍ଣ୍ଣୟର ଗୁରୁତ୍ୱ –

ସାଧାରଣ ଚିକିତ୍ସାଦ୍ୱାରା ଚକ୍ଷୁରୋଗ, ଯକୃତ୍ ବିକାର, କୋଷ୍ଠବଦ୍ଧତା, ଫୁସ୍‌ଫୁସ ରୋଗ, କର୍ଣ୍ଣଶୂଳ, ଦନ୍ତଶୂଳ, ଫୋଟକା ପ୍ରଭୃତି ଆଭ୍ୟନ୍ତରୀଣ ବା ବାହ୍ୟିକ ରୋଗ ଭଲ ହୋଇପାରେ, ମାତ୍ର ତଦ୍ୱାରା ଚିକିତ୍ସା କାର୍ଯ୍ୟ ପର୍ଣ୍ଣାଙ୍ଗ ହୁଏ ନାହିଁ । ରୋଗୀର ଶାରୀରିକ ଗଠନ ଓ ପ୍ରକୃତିଗତ ବିଶିଷ୍ଟତା ପ୍ରତି ଧ୍ୟାନ ଦଆ ନ ଗଲେ ଚିକିତ୍ସାର ଫଳ ସ୍ଥାୟୀ ବା ଅନୁକୂଳ ହୋଇପାରେ ନାହିଁ ।

ଡିଚେନଙ୍କ ଔଷଧଗୁଡ଼ିକ ଚିକିତ୍ସା କାର୍ଯ୍ୟର ଉପରୋକ୍ତ ବୈଶିଷ୍ଟ୍ୟ ପ୍ରତି ଧ୍ୟାନ ଦେଇ ପ୍ରସ୍ତୁତ କରାଯାଇଥାଏ । ଚିକିତ୍ସା କ୍ଷେତ୍ରରେ ଆମର ସଫଳତାର ତାହାହିଁ ଆମର ଗୂଢ଼ତତ୍ତ୍ୱ ।

ଉପରୋକ୍ତ ଚିନ୍ତାଧାରା ବା ଭେଷଜ ଉପାଦାନଗୁଡ଼ିକର ଅଭିନବ ମିଶ୍ରଣ ଯୋଗୁଁ ଡ଼ିଚେନ୍‌ଙ୍କ ଔଷଧ ସମୂହ ଉଦ୍‌ଭୂତ ନୁହେଁ; ଅଧିକନ୍ତୁ ଚିକିତ୍ସା ଶାସ୍ତ୍ରର ତାତ୍ତ୍ୱିକତା ଦୃଷ୍ଟିରୁ ସୁପ୍ରମାଣିତ ।

ଏହା ପ୍ରମାଣିତ ସତ୍ୟ—କୌଣସି ରୋଗର ଚିକିତ୍ସାପାଇଁ କିଛି ଧରାବନ୍ଧା ଔଷଧ ବ୍ୟବସ୍ଥା ନାହିଁ । ମାତ୍ର ରୋଗର ଉପସର୍ଗଗୁଡ଼ିକର ଆବଶ୍ୟକତା ଅନୁଯାୟୀ ଧରାବନ୍ଧା ଔଷଧ ଦିଆଯାଇଥାଏ ।

ଆମର ମୂଳ ଲକ୍ଷ୍ୟ ହେଉଛି, ବିଭିନ୍ନ ବ୍ୟକ୍ତିଙ୍କର, ବିଭିନ୍ନ ଦଷ୍ଟିକୋଣରୁ ଓ ବିଭିନ୍ନ ପରିବେଶରୁ ଉପଲବ୍‌ଧ ଚିକିତ୍ସା ସମ୍ପର୍କୀୟ ଜ୍ଞାନର ସମନ୍ୱୟ କରିବା । ଯାବତୀୟ ତତ୍ତ୍ୱ ନିଜ ନିଜ ଦୃଷ୍ଟିକୋଣରୁ ସତ୍ୟ ହୋଇପାରେ, ମାତ୍ର ପ୍ରୟୋଗ କ୍ଷେତ୍ରରେ ଭୁଲ ବୋଲି ପ୍ରମାଣିତ ହୋଇଥାଏ । ଏହାର କାରଣ ମନୁଷ୍ୟ ହେଉଛି ଏକ ବୈଚିତ୍ର୍ୟ ବିଶିଷ୍ଟ ଜୀବ ।

ଏଣୁ ଏହି ଦୃଷ୍ଟିକୋଣରୁ ବିଭିନ୍ନ ଔଷଧୀୟ ଉପାଦାନଗୁଡ଼ିକର ଯଥାର୍ଥ ମିଶ୍ରଣ ଯେପରି ଆବଶ୍ୟକ, ପ୍ରଚଳିତ ଚିକିତ୍ସା ବିଜ୍ଞାନଗୁଡ଼ିକର ତାତ୍ତ୍ୱିକତାର ସମନ୍ୱୟ ମଧ୍ୟ ଅନୁରୂପଭାବେ ଆବଶ୍ୟକ । ଚକିତ୍ସା ବିଜ୍ଞାନର ଏହି ପରମ ଆବଶ୍ୟକତାଟି ଆମର ସର୍ବଦା ଧ୍ୟେୟ ହୋଇଆସିଅଛି

ଡିଚେନଙ୍କ ହର୍ବୋମିନରାଲ (ଧାତବ ବନସ୍ପତିଜ) ଔଷଧଗୁଡ଼ିକ ଆୟୁର୍ବେଦ, ହୋମିଓ-ପାଥି ଓ ଏଲୋପାଥି ଚିକିତ୍ସା ବିଜ୍ଞାନର ମୌଳିକ ତତ୍ତ୍ୱ ଉପରେ ଆଧାରିତ

ଆମ୍ଭେମାନେ ଜ୍ଞାନରାଜ୍ୟରେ ବହୁ ଜ୍ଞାନର ସମ୍ଭାର ପାଇଅଛୁ ଏବଂ ତଦ୍ୱାରା ଆମ୍ଭେମାନେ ଅନେକ ସମୟରେ ସଂଶୟାପନ୍ନ ହୋଇପଡ଼ୁଛୁ । ଯଦି ମନୁଷ୍ୟ ନମ୍ରତା ଶିକ୍ଷାକରେ, ତାହାହେଲେ ସେ ଚିକିତ୍ସା କ୍ଷେତ୍ରରେ ପ୍ରଚଳିତ ବିଭିନ୍ନ ପଦ୍ଧତିର ନିରପେକ୍ଷ ଅନୁଶୀଳନ କରିବ । ଏଲୋପାଥି ଚିକିତ୍ସକମାନେ ତାଙ୍କ ନିଜ ପଦ୍ଧତି ଅନୁଯାୟୀ ଚିକିତ୍ସା କରି ସଫଳକାମ ହୁଅନ୍ତି । ମାତ୍ର ଜଣେ ହୋମିଓପାଥ୍ ଏଲୋପାଥି ଚିକିତ୍ସାର ବିପରୀତ ଆଭିମୁଖ୍ୟରେ ଚିକିତ୍ସା କରି ସଫଳକାମ ହୁଏ । ଆୟୁର୍ବେଦ ଚିକିତ୍ସକଗଣ ନିଜର ସ୍ୱତନ୍ତ୍ର

ପଦ୍ଧତିଦ୍ୱାରା ରୋଗ ଆରୋଗ୍ୟ କରନ୍ତି । ଅନୁରୂପଭାବେ ଜଣେ ପ୍ରାକୃତିକ ଚିକିତ୍ସକ ବା ଇଉନାନୀ ଚିକିତ୍ସକ ବା ମାନସିକ ରୋଗ ଚିକିତ୍ସକ ନିଜ ପଦ୍ଧତି ଅନୁଯାୟୀ ଚିକିତ୍ସା କରି ରୋଗୀର ଆସ୍ଥାଭାଜନ ହୋଇଥାଏ । ମାତ୍ର ଯେଉଁ ଚିକିତ୍ସକ ସମସ୍ତ ଚିକିତ୍ସା ପଦ୍ଧତିର ସାରମର୍ମ୍ମ ଗ୍ରହଣ କରି ଚିକିତ୍ସା କାର୍ଯ୍ୟରେ ବ୍ରତୀ ହୁଏ ସେ ସର୍ବଶ୍ରେଷ୍ଠ ଚିକିତ୍ସକ । ଯେଉଁ ଚିକିତ୍ସକ ଚିକିତ୍ସାବିଜ୍ଞାନର ବହୁଜ୍ଞାନ ଲଭ କରି ମଧ୍ୟ ନିଜେ ଅଳ୍ପଜ୍ଞାନ ଲଭ କରିଛି ବୋଲି ଭାବେ ଏବଂ ପ୍ରତ୍ୟେକ ରୋଗୀର ଆର୍ଥିକ ଅବସ୍ଥା ଦୃଷ୍ଟିରୁ ସ୍ୱଳ୍ପ ବ୍ୟୟସାଧ୍ୟ ଔଷଧଟିଏ ବ୍ୟବସ୍ଥା କରିପାରେ ସେ ସମସ୍ତଙ୍କଠାରୁ ଉନ୍ନତ ଚିକିତ୍ସକ । ଶ୍ରେଷ୍ଠ ଚିକିତ୍ସକଗଣ ଶ୍ରମ ସ୍ୱୀକାର କରି ରୋଗୀର ଶାରୀରିକ ଗଠନ, ଦକ୍ଷତା, ମାନସିକ ଆଶା ଆକାଂକ୍ଷା ବିଷୟରେ ସମ୍ପୂର୍ଣ୍ଣ ଅବହିତ ହୋଇ ଚିକିତ୍ସା କାର୍ଯ୍ୟରେ ବ୍ରତୀ ହୋଇଥାନ୍ତି । ରୋଗୀର ଉପରୋକ୍ତ କ୍ରିୟା ପ୍ରକ୍ରିୟାର ଜ୍ଞାନ ରୋଗ ଚିକିତ୍ସାରେ ବିଶେଷ ସହାୟକ ହୋଇଥାଏ । ରୋଗୀର ଉପରୋକ୍ତ ବିଭବଗୁଡ଼ିକର ଏକକ ବା ମିଳିତ ପ୍ରଭାବ ବିଷୟରେ ଯେଉଁ ଚିକିତ୍ସକ ଅବହିତ ନୁହଁନ୍ତି ବାସ୍ତବ କ୍ଷେତ୍ରରେ ସେ ଜଣେ ଅଜ୍ଞ ଚିକିତ୍ସକ ।

## ବିଭିନ୍ନ ଚିକିତ୍ସା ପଦ୍ଧତିର ଉତ୍କର୍ଷତାରୁ ଡ଼ିଚେନଙ୍କ ଔଷଧସମୂହ ଉଦଭୂତ—

ବିଭିନ୍ନ ଚିକିତ୍ସା ପଦ୍ଧତିର ଗବେଷକମାନଙ୍କ ପ୍ରତି ଆମେ ଗଭୀର ସମ୍ମାନ ପ୍ରକାଶ କରୁଅଛୁଁ । ବିଭିନ୍ନ ଚିକିତ୍ସା ପଦ୍ଧତିର ମୌଳିକ ତତ୍ତ୍ୱକୁ ଗଭୀର ଅନୁଶୀଳନ କରି ସେମାନଙ୍କ ମଧ୍ୟରେ ଯେଉଁଠାରେ ସମନ୍ୱୟ ଅଛି, ତାହାହିଁ କାର୍ଯ୍ୟକ୍ଷେତ୍ରରେ ପ୍ରମାଣିତ କରିବାର ଉଦ୍ୟମ କରିଛୁ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ଚିକିତ୍ସକମାନଙ୍କର ଭାବଧାରାକୁ ନିରପେକ୍ଷ ଭାବରେ ସମନ୍ୱୟ କରିବାର ଉଦ୍ୟମ କରିଅଛୁଁ । ଏତଦ୍ୱାରା ଆମ୍ଭେମାନେ ଏକ ନୂଆ ପଦ୍ଧତି ଆବିଷ୍କାର କରିଛୁ ବୋଲି ଦାବୀ କରୁନାହୁଁ । ମାତ୍ର କାର୍ଯ୍ୟ କ୍ଷେତ୍ରରେ କେତେ-କାଂଶରେ ସମନ୍ୱୟ ଆଣିବାରେ ସମର୍ଥ ହୋଇଅଛୁଁ ଏବଂ ତଦ୍ୱାରା ପ୍ରତି ଚିକିତ୍ସା ପଦ୍ଧତିର ଉତ୍କର୍ଷତା ଗ୍ରହଣ କରିଅଛୁଁ । ଏଣୁ ବିଭିନ୍ନ ଚିକିତ୍ସା ପଦ୍ଧତିର ଅପକର୍ଷତା ଆମ ଔଷଧରେ ପରିଲକ୍ଷିତ ହୁଏ ନାହିଁ ।

## ଆୟୁର୍ବେଦ ହୋମିଓପାଥି ଏବଂ ଏଲୋପାଥିର ମୌଳିକ ତତ୍ତ୍ୱ—

ଆୟୁର୍ବେଦ ପ୍ରଣାଳୀରେ କ୍ରମାଗତ ଘର୍ଷଣ, ମର୍ଦ୍ଦନ, ଚୂର୍ଣ୍ଣନ କରିବାଦ୍ୱାରା ଔଷଧୀୟ ଉପାଦାନଗୁଡ଼ିକର ଗୁଣବୃଦ୍ଧି ଘଟିଥାଏ । କିନ୍ତୁ ଏହା ହୋମିଓପ୍ୟାଥିର ଶକ୍ତିବର୍ଦ୍ଧନ (Potentization) ପ୍ରକ୍ରିୟାଠାରୁ ଭିନ୍ନ ପ୍ରକ୍ରିୟା । କ୍ରମାଗତ ଘର୍ଷଣ, ମର୍ଦ୍ଦନ, ଚୂର୍ଣ୍ଣନଦାରା ଦ୍ରବ୍ୟର ସ୍ୱଭାବ ସୁଲଭଗୁଣ ବୃଦ୍ଧିପାଇଥାଏ ବୋଲି ଆୟୁର୍ବେଦାଗ୍ରର୍ଯ୍ୟଗଣ

ନିଜ ଅନୁଶୀଳନରୁ ଜାଣିଥିଲେ । ଆମର ଏହି ହର୍ବୋମିନରାଲ ଔଷଧଗୁଡ଼ିକର ପ୍ରସ୍ତୁତି ପ୍ରଣାଳୀ ପୂର୍ବୋକ୍ତ ଚିନ୍ତାଧାରାଦ୍ୱାରା ଆଧାରିତ ଓ ପ୍ରଭାବିତ । ଏଣୁ ଏହା ସ୍ୱଳ୍ପ ମାତ୍ରାରେ ପ୍ରୟୋଗକଲେ ଆଶୁ ଗୁଣକାରିତା ଦେଖାଇଥାଏ । ଏହି ପୁସ୍ତିକାରେ ଉକ୍ତ ସୂକ୍ଷ୍ମୀକରଣ ପ୍ରଣାଳୀକୁ ଅଟୋମାଇଜଡ୍ (ପରମାଣକରଣ) ବୋଲି କୁହାଯାଇଅଛି । ଅଟମାଇଜଡ୍ (ପରମାଣୁକରଣ) ପ୍ରଣାଳୀଦ୍ୱାରା ପ୍ରସ୍ତୁତ ଔଷଧଗୁଡ଼ିକ ପ୍ରୟୋଗ କ୍ଷେତ୍ରରେ କ୍ଷିପ୍ର ଗୁଣକାରୀ ଭାବରେ ସୁପ୍ରମାଣିତ ।

Greifswald ବିଶ୍ୱବିଦ୍ୟାଳୟର ଫାର୍ମାକୋଲୋଜି ବିଭାଗର ଅଧ୍ୟାପକ Schwlz କେତେକ ଇଷ୍ଟସେଲ (କୋଷ)କୁ ମରକ୍ୟୁରି କ୍ଲୋରାଇଡ଼ର ଭିନ୍ନ ଭିନ୍ନ ଶକ୍ତିର ଦ୍ରାବ ସହିତ ରଖିଲେ । ଫଳରେ ଦେଖାଗଲା କଡ଼ା ଦ୍ରାବରେ ଥିବା ଇଷ୍ଟ ସେଲ-ଗଡ଼ିକ ଶୀଘ୍ର ନଷ୍ଟ ହୋଇଯାଉଛି । ତାଠାରୁ ଲଘୁଦ୍ରାବ Weaker Solutionରେ ସେଲଗୁଡ଼ିକର ପ୍ରାଣଶକ୍ତି ବାଧାପ୍ରାପ୍ତ ହେଉଅଛି । ଇଷ୍ଟସେଲଗୁଡ଼ିକୁ ୧×୭ ବା ୮ ମିଲିଅନ୍ ଶକ୍ତି ବିଶିଷ୍ଟ ଦ୍ରାବ ମଧ୍ୟରେ ରଖିବାଦ୍ୱାରା ସେମାନଙ୍କର ଜୀବନୀ ଶକ୍ତି ତ୍ୱରାନ୍ୱିତ ହେଉଅଛି ଏବଂ ସେମାନଙ୍କର ସଂଖ୍ୟା ବହୁଗୁଣ ବଢ଼ିଯାଉଛି । ଆମ୍ଭେମାନେ ଏହା ପ୍ରତ୍ୟକ୍ଷ ଭାବରେ ଦେଖୁଛୁ—ଆମର ପରମାଣୁକୃତ ଔଷଧ ସ୍ୱଳ୍ପ ମାତ୍ରାରେ ପ୍ରୟୋଗଦ୍ୱାରା ଶରୀର ମଧ୍ୟରେ ଯେଉଁ ପ୍ରତିକ୍ରିୟା ସୃଷ୍ଟିକରୁଛି, ସେ ସ୍ଥଳରେ ଗୁରୁ-ମାତ୍ରାରେ ଔଷଧ ପ୍ରୟୋଗଦ୍ୱାରା ଶରୀରର କ୍ରିୟାଶକ୍ତିକୁ ଆବଦ୍ଧ କରିଦେଉଅଛି—ସ୍ଥଳ-ବିଶେଷରେ ଶରୀରର କ୍ରିୟା ଶକ୍ତିକୁ ନଷ୍ଟ କରିଦେଉଅଛି । ଫଳରେ ଔଷଧ ପ୍ରୟୋଗ, ବିପରୀତ କ୍ରିୟା ସୃଷ୍ଟି କରୁଅଛି ।

ଆମର ଅଣୁକୃତ ଔଷଧଗୁଡ଼ିକ ସେବନ କରିବା ପରେ ଏହା ପାକସ୍ଥଳୀରେ ପହଞ୍ଚିବା ପୂର୍ବରୁ—ଅର୍ଥାତ୍ ଜିହ୍ୱାର ଶ୍ଳୈଷ୍ମିକ ଝିଲ୍ଲୀ ଉପରେ ପଡ଼ିବା ସଙ୍ଗେ ସଙ୍ଗେ ଅନ୍ତଃଶୋଷିତ ହୋଇ ଶରୀରରେ ଔଷଧ କ୍ରିୟା ପ୍ରଦର୍ଶନ କରୁଅଛି । ଏଣୁ ଏହାକୁ ରୋଗର ଉଗ୍ର ଅବସ୍ଥାରେ ପ୍ରୟୋଗ କଲେ ଆଶାନୁରୂପ ଗୁଣ ଶୀଘ୍ର ମିଳିଥାଏ । ଆଉ ଔଷଧର ଫଳ ପାଇବାପାଇଁ ଘଣ୍ଟା ଘଣ୍ଟାଧରି ଅପେକ୍ଷା କରିବାକୁ ପଡ଼େ ନାହିଁ । ଔଷଧ ବ୍ୟବହାର କରିବାର କେତେକ ମିନିଟ୍ ମଧ୍ୟରେ ଔଷଧ ତାହାର କାର୍ଯ୍ୟ ଆରମ୍ଭ କରିଦିଏ । ପରମାଣୁକୃତ ଔଷଧଗୁଡ଼ିକ ଜହ୍ୱାର ଝିଲ୍ଲୀ ସ୍ତରରେ ପଡ଼ିବା ସମୟରୁ କିପରି କାର୍ଯ୍ୟକାରୀ ହୁଏ ସେ ସମ୍ପର୍କରେ ଏସେନର ଡକ୍‌ଟର ମେଡ୍‌ମଣ୍ଡିଲ ଅନୁଶୀଳନଦ୍ୱାରା ପ୍ରମାଣିତ କରିଅଛନ୍ତି । ସେ ପରମାଣୁକୃତ ଡିଗାଟେଲର ଦ୍ରବରେ ଗୋଟିଏ କାଚ କାଠି ବୁଡ଼ାଇ ଜଣେ ଲୋକର ଜିଭ ଉପରେ ସ୍ପର୍ଶ କରାଇଦେଲେ । କେତେକ ସେକେଣ୍ଡ ପରେ ତାର ପ୍ରତିକ୍ରିୟା ହୃଦଯନ୍ତ୍ର ଉପରେ ପ୍ରତିଫଳିତ ହେବାର ଦେଖାଗଲା । ଅନ୍ୟ ଏକ ସ୍ଥଳରେ ପରମାଣୁକୃତ ମର୍ଫିଆର ଗୋଟିଏ ବନ୍ଦ ଜଣକର ଜିଭ ଉପରେ ପକାଇ

ଦିଆଗଲା । ପ୍ରାୟ ଦୁଇମିନିଟ ପରେ ତାହା ରକ୍ତରେ ମିଶିଯାଇଥିବାର ପ୍ରମାଣ ରୋଗୀର ଶିରାରୁ ସଂଗୃହୀତ ରକ୍ତରୁ ଜଣାଗଲା ।

ଏଣୁ ଆମର ଔଷଧଗୁଡ଼ିକ ପରମାଣୁକରଣ ପ୍ରଣାଳୀଦ୍ୱାରା ପ୍ରସ୍ତୁତ କରାଯାଇ-ଥିବାରୁ ରୋଗର ପ୍ରବଳ ପ୍ରକୋପ ଅବସ୍ଥାରେ ସ୍ୱଳ୍ପ ମାତ୍ରାରେ ପ୍ରୟୋଗ କରିବାଦ୍ୱାରା ଫଳପ୍ରଦ ହୋଇଥାଏ । ଫଳରେ ଔଷଧଗୁଡ଼ିକର ଆଶୁକାରିତା ଗୁଣ ଦେଖି ଚିକିତ୍ସକଗଣ ବିସ୍ମିତ ହୋଇଥାନ୍ତି ।

ଆୟୁର୍ବେଦ ଔଷଧଗୁଡ଼ିକର ପ୍ରସ୍ତୁତୀକରଣର ବୈଶିଷ୍ଟ୍ୟ ହେତୁ ତାର ଗୁଣ ବୃଦ୍ଧି ଘଟିଥାଏ । ଇଉନାନ ଔଷଧଗୁଡ଼ିକର ପ୍ରସ୍ତୁତ ପ୍ରଣାଳୀ ପ୍ରାୟ ଆୟୁର୍ବେଦ ପ୍ରଣାଳୀର ଅନୁମତ । ବିଭିନ୍ନ ଧାତୁ ଭସ୍ମକୁ ବିଭିନ୍ନ ବୃକ୍ଷଲତାର ସ୍ୱରସରେ ପୁନଃ ପୁନଃ ମର୍ଦନ କରିବା ଦ୍ୱାରା ବା ପରମାଣୁକୃତ ଧାତୁ ଭସ୍ମ ବୃକ୍ଷଲତାରୁ ପ୍ରସ୍ତୁତ ତରଳ ଦ୍ରବ ବା ନିର୍ଯାସରେ ମିଶାଇବାଦ୍ୱାରା ଔଷଧ ଯୋଗଗୁଡ଼ିକର ଗୁଣବୃଦ୍ଧି ଘଟିଥାଏ । ଏହି ପ୍ରକ୍ରିୟାଗୁଡ଼ିକ ଏପରି ସୁବ୍ୟବସ୍ଥିତ ଯେ, ତଦ୍ୱାରା କୌଣସି ଦ୍ରବ୍ୟର ଗୁଣହାନି ନ ଘଟି ମୂଳ ଦ୍ରବ୍ୟ-ଗୁଡ଼ିକର ସ୍ୱାଭାବିକ ଗୁଣ ଦୀର୍ଘସ୍ଥାୟୀ ହୋଇରହେ, ଏଣୁ ପ୍ରୟୋଗ କ୍ଷେତ୍ରରେ ଏହା ଦୀର୍ଘସ୍ଥାୟୀ ଅଥଚ ଆଶୁ ଫଳ ଦେଇଥାଏ । ସ୍ଥୂଳ ଉପାଦାନଠାରୁ ସୂକ୍ଷ୍ମତମ ଉପାଦାନ-ଗୁଡ଼ିକ ଯେ ଆଶୁଫଳପ୍ରଦ, ଏହା ଆୟୁର୍ବେଦ ମନୀଷୀଗଣ ଅନୁଶୀଳନଦ୍ୱାରା ପ୍ରମାଣିତ କରିଯାଇଛନ୍ତି ।

ଏହି ତତ୍ତ୍ୱ ହୋମିଓପାଥିର "ସିମିଲସିମିଲସ" ଅର୍ଥାତ୍ "ସମଃ ସମଂ ଶମୟତି, ତତ୍ତ୍ୱଠାରୁ ଭିନ୍ନ । ଏଲୋପାଥି ଚିକିତ୍ସାର ମଧ୍ୟ ସ୍ୱତନ୍ତ୍ର ଦୃଷ୍ଟିକୋଣ ଅଛି । ଏହି ଦୁଇ ଶ୍ରେଣୀର ଚିକିତ୍ସାକୁ ବୈଜ୍ଞାନିକ ଚିକିତ୍ସା ବୋଲି ଦାବୀ କରାଯାଏ । ମାତ୍ର ସୂକ୍ଷ୍ମ ବିଚାରଦ୍ୱାରା ବିଚାରକଲେ ମୌଳିକ ବିଚାର ଦୃଷ୍ଟିରୁ ପରସ୍ପର ଅଭିନ୍ନ ଏବଂ କାର୍ଯ୍ୟ କ୍ଷେତ୍ରରେ ସମାନ ଫଳ ଦେଖାଇଥାନ୍ତି ଯଦିଓ ପରିମାଣରେ ସାମାନ୍ୟ ପାର୍ଥକ୍ୟ ଘଟେ । ଏଲୋପାଥି:— ଏଲୋପାଥି ଚିକିତ୍ସାର ବହୁ ବିଶେଷଜ୍ଞଙ୍କ ମତରେ ବହୁ ମାତ୍ରାରେ ଔଷଧ ପ୍ରୟୋଗଦ୍ୱାରା କେତେକ କ୍ଷେତ୍ରରେ ଜୀବାଣୁମାନଙ୍କର ରୋଗବର୍ଦ୍ଧନ ଶକ୍ତିକୁ କମାଇଦିଏ, ମାତ୍ର ସ୍ୱଳ୍ପ ମାତ୍ରାରେ ପ୍ରୟୋଗ କରିବାଦ୍ୱାରା ତାହା ଜେନ ପ୍ରତିରୋଧୀ କାର୍ଯ୍ୟକରେ । ସ୍ଥଳ-ବିଶେଷରେ ପ୍ରତିପିଣ୍ଡ ସୃଷ୍ଟିକରି ରୋଗଶାମକ ଓ ରୋଗ ପ୍ରତିରୋଧକ କ୍ଷମତା ସୃଷ୍ଟି କରେ । ଏଲୋପାଥି ଚିକିତ୍ସାର କେତେକ ବିଶେଷଜ୍ଞଙ୍କ ମତରେ ଗୁଡ଼ାଏ ଔଷଧ ଖାଇବା କିଛି ବଡ଼ କଥା ନୁହେଁ । ସେମାନଙ୍କର ମତ ଅଣୁକୃତ ଦ୍ରବ୍ୟାଂଶ କେତେ ପରିମାଣରେ ଶରୀର ପ୍ରକ୍ରିୟାଗ ପ୍ରବାହରେ କାର୍ଯ୍ୟକରେ ତାହା ବିଶେଷ ପ୍ରଣିଧାନର ବିଷୟ । ଔଷଧୀୟ ଉପାଦାନଗୁଡ଼ିକର ଅଣୁକରଣଦ୍ୱାରା ଉକ୍ତ ଅଣୁମାନଙ୍କ ମଧ୍ୟରେ ଏକ

ବୈଦ୍ୟୁତିକ ଗତିଶୀଳତା ଜନ୍ମେ । ସେହି ଗତିଶୀଳତା ଯୋଗୁଁ ଔଷଧଗୁଡ଼ିକ ଆଶୁଫଳପ୍ରଦ ହୋଇଥାଏ ।

ଡକ୍ଟର ଡବ୍ଲ୍ୟୁ କାରୋ ତାଙ୍କ ଲିଖିତ "Urinary and prostatic Trowbles) ପୁସ୍ତକରେ ଦୃଢ଼ ଅଭିମତ ପ୍ରଦାନକରି ଉଲ୍ଲେଖ କରିଛନ୍ତି, ହୋମିଓପାଥି ଓ ଏଲୋପାଥି ଚିକିତ୍ସକଗଣ ସେମାନଙ୍କ ସୀମିତ ପରିସର ବିଷୟରେ ଅବହିତ ରହିବା ଆବଶ୍ୟକ । ପ୍ରତ୍ୟେକ ପ୍ରତ୍ୟେକର ସଫଳତା ପାଇଁ ପ୍ରତ୍ୟେକ ପ୍ରତ୍ୟେକର ଜ୍ଞାନକୁ ନିଜ ଜ୍ଞାନର ପରିପୂରକ ଭାବେ ଗ୍ରହଣ କରିବା ଆବଶ୍ୟକ । ଏହାଦ୍ୱାରା ଭବିଷ୍ୟତପାଇଁ ଏକ ଆଦର୍ଶ ଚିକିତ୍ସା କୌଶଳ ସୃଷ୍ଟି ହୋଇପାରିବ ।

## ଚିକିତ୍ସା କ୍ଷେତ୍ରରେ ଆଧ୍ୟାତ୍ମିକତାର ସ୍ଥାନ—

ଅନେକଙ୍କ ମତରେ ଚିକିତ୍ସା କାର୍ଯ୍ୟରେ ଆଧ୍ୟାତ୍ମକତାର ସ୍ଥାନ ନାହିଁ । ମାତ୍ର ଚକିତ୍ସା କ୍ଷେତ୍ରରେ କେବଳ ରୋଗୀର ଶାରୀରିକ କ୍ରିୟା ପ୍ରତିକ୍ରିୟା ପ୍ରତି ଧ୍ୟାନ ଦେଲେ ଚିକିତ୍ସା କାର୍ଯ୍ୟ ପୂର୍ଣାଙ୍ଗ ହୁଏ ନାହିଁ । କାରଣ ମନୁଷ୍ୟର ମନ ଶରୀରର କ୍ରିୟା ପ୍ରକ୍ରିୟାକୁ ନିୟନ୍ତ୍ରଣ କରେ । ଏଣୁ ଚିକିତ୍ସା କ୍ଷେତ୍ରରେ ରୋଗୀର ମାନସିକ କ୍ରିୟା ପ୍ରତିକ୍ରିୟା ପ୍ରତି ଧ୍ୟାନ ଦେବା ଏକାନ୍ତ ଆବଶ୍ୟକ । ମନର କ୍ରିୟା ମଧ୍ୟ ଶରୀର ଓ ଆତ୍ମାର କ୍ରିୟା ପ୍ରତିକ୍ରିୟା ଉପରେ ନିର୍ଭରୀଶଳ ।

ଏହି ବିଚାରଧାରାର ଭିତ୍ତିଭୂମି ଉପରେ ଡିଚେନଙ୍କ ଫାର୍ବୋ ମିନରାଲ ଔଷଧ ପ୍ରୟୋଗ ପ୍ରଣାଳୀ ପ୍ରତିଷ୍ଠିତ । କାରଣ ଆମେ ମନେକରୁ—ଶରୀର, ମନ ଓ ଆତ୍ମାର ଅପୂର୍ବ ମିଳନରେ ମନୁଷ୍ୟ ସୃଷ୍ଟି ହୋଇଛି ।

ରୋଗ ହେଲେ କୌଣସି ଅଙ୍ଗ ଆକ୍ରାନ୍ତ ହୋଇଛି ବୋଲି ଆମେ ବିଚାରକରୁ । ମାତ୍ର ଶରୀର ପ୍ରକ୍ରିୟାର ସମସ୍ତ ପ୍ରବାହ ମଧ୍ୟରେ ଘଟୁଥିବା ବିଷମତାର ପରିପ୍ରକାଶ ଅଙ୍ଗବିଶେଷରେ ଘଟିଥାଏ ।

ଆଧୁନିକ ଯଗର ଗବେଷକମାନଙ୍କର ଗବେଷଣାଲବ୍ଧ ତତ୍ତ୍ୱ ସମୂହକୁ ବିଚାର କଲେ ଭଣାଅଧିକ ପ୍ରତ୍ୟେକ ଆମର ପ୍ରାଚୀନ ସିଦ୍ଧାନ୍ତ—

"ମନଃ ଏବ ମନଷ୍ୟାଣାଂ କାରଣଂ ବନ୍ଧ ମୋକ୍ଷୟୋଃ ।"

ଅର୍ଥାତ୍ ମନୁଷ୍ୟର ମନ ହେଉଛି, ତାର ବନ୍ଧନ, ମୋକ୍ଷ, ରୋଗ ଓ ଶୋକର କାରଣ, ଏହି ତତ୍ତ୍ୱ ସହିତ ଏକମତ ।

ସାଧାରଣ ନୀତି ହେଲା, ଚିକିତ୍ସକ ରୋଗୀର ଚିକିତ୍ସା କରିବ-ମାତ୍ର ରୋଗର ନୁହଁ । ଏଣୁ ଚିକିତ୍ସା କ୍ଷେତ୍ରରେ ରୋଗୀର ଖାଦ୍ୟ ପାନୀୟ, ପ୍ରଚଳନ ପ୍ରଣାଳୀ, ବିଚାର ବିବେକ, ଜୀବନର ଚିନ୍ତାଦର୍ଶ ପ୍ରତି ଧ୍ୟାନଦେବା ଆବଶ୍ୟକ । ଏ ସମସ୍ତକୁ ଯଥାଯଥ-ଭାବେ ସଂଶୋଧନ କରି ନ ପାରିଲେ, ରୋଗୀକୁ ସମ୍ପୂର୍ଣ୍ଣ ନୀରୋଗ କରିହେବ ନାହିଁ ।

## ମନସ୍ତାତ୍ତ୍ୱିକ ଚିକିତ୍ସା–

ସ୍ନାୟବିକ ରୋଗ ସମୂହକୁ ଦୂର କରିବାକୁ ହେଲେ ରୋଗୀର ମାନସିକ ଚିନ୍ତାବୋଧକୁ ଉନ୍ନତ କରିବା ସର୍ବବାଦୀସମ୍ମତ ନୀତି । ସାଧାରଣ ରୋଗ ତଥା ସ୍ନାୟୁଗତ ରୋଗ ସମୂହର ଚିକିତ୍ସା କରିବା ସମୟରେ ରୋଗୀର ମାନସିକ ବିଭବ ପ୍ରତି ଧ୍ୟାନ ଦେବାଦ୍ୱାରା ଚିକିତ୍ସା କାର୍ଯ୍ୟ ସୁଗମ ହୋଇଥାଏ । ମନସ୍ତାତ୍ତ୍ୱିକ ପ୍ରଭାବ ରୋଗୀର କଳ୍ପନାଶକ୍ତିକୁ ଉଦ୍‌ଜୀବିତ କରିବା ସଙ୍ଗେ ସଙ୍ଗେ ଚିକିତ୍ସକର ଦକ୍ଷତା ଉପରେ ଆସ୍ଥାଶୀଳ କରାଇଥାଏ । ମନସ୍ତାତ୍ତ୍ୱିକ ବିଚାର ଚିକିତ୍ସା କାର୍ଯ୍ୟକୁ ସୁଗମ କରିବା ସଙ୍ଗେ ସଙ୍ଗେ ସଫଳତା ଦିଗରେ ଯଥେଷ୍ଟ ଆଗେଇ ନେଇପାରେ ।

ଆତ୍ମିକ ଉନ୍ନତିବିଧାନ ଯେ କେବଳ ମନୁଷ୍ୟର କଳ୍ପନା ଶକ୍ତିକୁ ଜାଗ୍ରତ କରେ, ତା ନୁହେଁ; ଅଧିକନ୍ତୁ କେତେକ ଆତ୍ମିକ ବିଭାବକୁ ମଧ୍ୟ କ୍ରିୟାଶୀଳ କରାଇଥାଏ । ଏଣୁ ଆତ୍ମବଳ, ଚିକିତ୍ସକର ସହଯୋଗ ଓ ଯଥାର୍ଥ ଔଷଧର ମିଳିତ ଉଦ୍ୟମରେ ରୋଗର ଚିକିତ୍ସା ସହଜ ଓ ସୁଗମ ହୋଇଥାଏ ଏବଂ ରୋଗୀ ହସ ହସ ମୁହଁରେ ରୋଗର ଯନ୍ତ୍ରଣାକୁ ସହ୍ୟକରି ନେଇଥାଏ ।

## ରୋଗ ପ୍ରତିଷେଧ ଓ ଆରୋଗ୍ୟ ଲାଭ କରିବାପାଇଁ କେତେକ ମୌଳିକତତ୍ତ୍ୱ–

ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିର ଜାଣିବାର କଥା—

(କ) ଜୀବନ ଦର୍ଶନକୁ କିପରି ଗ୍ରହଣ କରିବାକୁ ହେବ ।

(ଖ) ନିଜର ତଥା ନିର୍ଭରଶୀଳ ବ୍ୟକ୍ତିଙ୍କର ସ୍ୱାସ୍ଥ୍ୟର କିପରି ଯତ୍ନ ନେବାକୁ ହେବ ।

ଜୀବନର ଆଦର୍ଶ ଅର୍ଥରେ ଆମକୁ ବୁଝିବାକୁ ହେବ—ଏହି ସଂସାରରେ ଆମର ଓ ସ୍ଥିତି ଆମର ଇଚ୍ଛାର ବସ୍ତୁ ନୁହେଁ । ଆମ୍ଭେମାନେ ବିଶ୍ୱ ସ୍ରଷ୍ଟାଙ୍କ ସୃଷ୍ଟିର ଏକ ଅଂଶ-ବିଶେଷ । ଏଣୁ ସେ କିଛି ବିଶେଷ ଉଦ୍ଦେଶ୍ୟ ନେଇ ଆମ୍ଭମାନଙ୍କୁ ସୃଷ୍ଟି କରିଅଛନ୍ତି । ଏଣୁ ସେହି ଉଦ୍ଦେଶ୍ୟକୁ ପୂରଣ କରିବା ଆମର କର୍ତ୍ତବ୍ୟ । ସେହି ଉଦ୍ଦେଶ୍ୟ ସହିତ ଆମର ସୁଖ ଦୁଃଖ ଏକାନ୍ତ ଭାବରେ ଜଡ଼ିତ । ଜୀବନର ଯଥାର୍ଥ ଉଦ୍ଦେଶ୍ୟ ବୁଝିବା ବିଷୟରେ ଆମ୍ଭେମାନେ ଅକ୍ଷମ ହେଲେ ଆମର ସାରା ଜୀବନ ବ୍ୟର୍ଥତାରେ ପରିଣତ ହେବ ।

ଜୀବନର ଦ୍ୱିତୀୟ କର୍ତ୍ତବ୍ୟ ହେଉଛି, ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ସ୍ୱାସ୍ଥ୍ୟରକ୍ଷାର ମୌଳିକ ନୀତିଗୁଡ଼ିକ ଜାଣିବ । ମାତ୍ର ଦୁଃଖର କଥା, କୌଣସି ଶିକ୍ଷିତ ବ୍ୟକ୍ତି କହିପାରିବ ନାହିଁ ଯେ, ସେ ନିଜର ରୋଗ ପାଇଁ ଆଦୌ ଦାୟୀ ନୁହେଁ ।

## ସ୍ୱାସ୍ଥ୍ୟରକ୍ଷା ଓ ରୋଗ ଚିକିତ୍ସାର ସାଧାରଣ ନୀତି—

ସ୍ୱାସ୍ଥ୍ୟ ନଷ୍ଟ ହୋଇଗଲେ ଆମେ ସ୍ୱାସ୍ଥ୍ୟର ମୂଲ୍ୟ ବୁଝୁ । ଅତୀତର ଭୁଲ ପାଇଁ ଆମ୍ଭେମାନେ ଅନୁଶୋଚନା କରିଥାଉଁ । ପ୍ରତ୍ୟେକ ରୋଗୀ ନିଜର ଭଗ୍ନ ସ୍ୱାସ୍ଥ୍ୟପାଇଁ ଦାୟୀ ଏହା ଏକାନ୍ତ ସତ୍ୟ । କିନ୍ତୁ ଏଥିପାଇଁ ଭାଙ୍ଗିପଡ଼ିଲେ ହେବ ନାହିଁ । ନିଜର ଆତ୍ମବିଶ୍ୱାସ ରହିବା ଆବଶ୍ୟକ—ସେ ନିଶ୍ଚୟ ଭଲ ହୋଇଯିବ । ସେଥିପାଇଁ ବ୍ୟସ୍ତ ହେବାର କିଛି ନାହିଁ । ନିଷ୍ଠାର ସହ ସେଥିପାଇଁ ଉଦ୍ୟମ କଲେ ପୂର୍ବର ଭଗ୍ନ ସ୍ୱାସ୍ଥ୍ୟ ଫେରିପାଇବେ । ଏଣୁ ପ୍ରତି କ୍ଷେତ୍ରରେ ନିଜକୁ ଓ ନିଜ ଉପରେ ନିର୍ଭରଶୀଳ ଆତ୍ମୀୟସ୍ୱଜନ ଯେପରି ରୋଗଗ୍ରସ୍ତ ନ ହୁଅନ୍ତି ସେଥିପ୍ରତି ସତର୍କତା ଅବଲମ୍ବନ କରିବାକୁ ହେବ, ପ୍ରତି କ୍ଷେତ୍ରରେ ଆବଶ୍ୟକୀୟ ପ୍ରତିଷେଧ ଉପାୟ ଅବଲମ୍ବନ କରିବାକୁ ପଡ଼ିବ । ଏହି ପ୍ରତିଷେଧ ଉପାୟଟି ପ୍ରତି ସତର୍କ ରହିଲେ ରୋଗଜନିତ ମନସ୍ତାପ ଓ ଶାରୀରିକ ଯନ୍ତ୍ରଣାରୁ ମୁକ୍ତି ମିଳିଥାଏ ।

## ସଂଯମର ଅଭବ ସମସ୍ତ ଦୁଃଖର କାରଣ—

ସଂଯମର ଅଭାବ ଯୋଗୁଁ ଆମର ନାନା ସମସ୍ୟା ଜନ୍ମିଥାଏ । ଇନ୍ଦ୍ରିୟମାନଙ୍କର ପ୍ରବୃତ୍ତିକୁ ଦମନ କରି ନ ପାରିଲେ ସେମାନେ ମନୁଷ୍ୟ ଉପରେ ଆଧିପତ୍ୟ ବିସ୍ତାର କରିଚାଲିଥାଆନ୍ତି । ଇନ୍ଦ୍ରିୟ ପ୍ରବୃତ୍ତି ମନୁଷ୍ୟ ପାଇଁ ଏକ ଆଶୀର୍ବାଦ ସ୍ୱରୂପ—ମାତ୍ର ତାହା ଶୃଙ୍ଖଳାହୀନ ହୋଇପଡ଼ିଲେ ଶତ୍ରୁପରି କାର୍ଯ୍ୟକରେ । ଏହି ଇନ୍ଦ୍ରିୟ ପ୍ରବୃତ୍ତିର ସଂଯମତା ଓ ଅସଂଯମତା ହେଉଛି ଆମର ଯାବତୀୟ ସୁଖ ଦୁଃଖର କାରଣ ।

ଏଣୁ ଆମର ଖାଦ୍ୟ, ପାନୀୟ, ଆଚରଣର ଯଥାର୍ଥ ନିୟନ୍ତ୍ରଣ, ସ୍ୱାସ୍ଥ୍ୟକର ମନୋବିନୋଦନ, ବ୍ୟାୟାମ ଓ ପରିଶ୍ରମର ଶୃଂଖଳା, ବିଶ୍ରାମ ଓ ନିଦ୍ରାର ନିୟନ୍ତ୍ରଣ ଏକାନ୍ତ ଆବଶ୍ୟକ । ଯଥାର୍ଥ ପରିଶ୍ରମ, ଅନ୍ୟର ନିଃସ୍ୱାର୍ଥ ସେବା ଓ ଉପକାର ଏଗୁଡ଼ିକ ଆଦର୍ଶ ସ୍ୱାସ୍ଥ୍ୟବିଧାନର ଏକାନ୍ତ ସହାୟକ ।

ମିତବ୍ୟୟିତା–

ସ୍ୱାସ୍ଥ୍ୟବିଧାନ ସହିତ ମିତବ୍ୟୟିତାର ସମ୍ପର୍କ ଅସଂଗତବୋଧ ହୋଇପାରେ । ମାତ୍ର ସ୍ୱାସ୍ଥ୍ୟବିଧାନ ସହିତ ଏହା ନିବିଡ଼ଭାବେ ସମ୍ପୃକ୍ତ । ନିଜେ ଯାହା ନୁହଁ–ତାହା ବାହାରକୁ ଦେଖାଇବାଦ୍ୱାରା ନିଜର ନୈତିକ ପତନ ଘଟେ । ଆଡ଼ମ୍ବର ପୂର୍ଣ୍ଣତା ପ୍ରତି ଆସକ୍ତି ଆସିଲେ ମନରେ କଳ୍ପନାର ବିଳାସ ଗଢ଼ି ଉଠେ । ସେଥିପାଇଁ କଠୋର ପରିଶ୍ରମ କରି ଶ୍ରାନ୍ତ କ୍ଳାନ୍ତ ହେବାକୁ ପଡ଼େ । ଏଣୁ ଏ ଜାତୀୟ ଚିନ୍ତାଧାରା ସ୍ୱାସ୍ଥ୍ୟର ଅନୁକୂଳ ହୋଇ ନ ପାରେ । ଏଥିରେ ସରଳ ନିରାଡ଼ମ୍ବର ପୂର୍ଣ୍ଣ ଜୀବନ ପ୍ରବାହ ବାଧାପ୍ରାପ୍ତ ହୁଏ । ଆମର ପୂର୍ବାଗ୍ରର୍ଯ୍ୟଗଣ ରୋଗର ସନ୍ନିକୃଷ୍ଟ କାରଣ ଓ ବିପ୍ରକୃଷ୍ଟ କାରଣ କଅଣ ତାହା ହୃଦୟଙ୍ଗମ କରିଥିଲେ । ଏଣୁ ଆୟକୁ ଦେଖି ବ୍ୟୟ କରିବାପାଇଁ ପରାମର୍ଶ ଦେଇଥିଲେ ।

ବିଶ୍ୱାସ–

ନିରୋଗ ଜୀବନଯାପନ ପାଇଁ ଭଗବାନ, ଚିକିତ୍ସକ ଓ ନିଜ ଉପରେ ଦୃଢ଼ ବିଶ୍ୱାସ ରଖିବା ଆବଶ୍ୟକ ।

ଆମେ ରୋଗଗ୍ରସ୍ତ ହେଲାବେଳେ ଆମର ମନ ଚଞ୍ଚଳ ଓ ଅସ୍ଥିର ହୋଇପଡ଼େ । ଆରୋଗ୍ୟଲାଭ ପାଇଁ ଗୋଟିଏ ଚିକିତ୍ସକକୁ ଛାଡ଼ି ଅନ୍ୟ ଗୋଟିଏ ଚିକିତ୍ସକର ଆଶ୍ରୟ ନେଉଁ । ଗୋଟିଏ ଔଷଧ ଛାଡ଼ି ଅନ୍ୟ ଏକ ଔଷଧ ସେବନ କରୁଁ । ଏ ଜାତୀୟ କାର୍ଯ୍ୟ ଫଳରେ ଆମର ସରଳ ରୋଗଟି ଜଟିଳ ହୋଇପଡ଼େ ।

ଏଣୁ ଚିକିତ୍ସା କ୍ଷେତ୍ରରେ ଇତସ୍ତତଃ ନ ହୋଇ ଗୋଟିଏ ଚିକିତ୍ସକ ଉପରେ ନିର୍ଭରଶୀଳ ହେବା ଆବଶ୍ୟକ । ଆରୋଗ୍ୟ ପ୍ରଦାନ କରିବାକୁ ଚିକିତ୍ସକଙ୍କୁ ସମୟ ଓ ସୁଯୋଗ ଦେବା ଉଚିତ । ପୁରାତନ ରୋଗର ଚିକିତ୍ସା ସର୍ବଦା ସମୟସାପେକ୍ଷ । କିନ୍ତୁ ସେଥିରେ ଯେଉଁ ଫଳ ମିଳେ ତାହା ସ୍ଥାୟୀ । ପୁରାତନ ରୋଗକୁ କୌଣସି ମତେ ଶୀଘ୍ର ଉପଶମ କରାଇ ଦେଲେ ପରିଣାମ ଭଲ ହୁଏ ନାହିଁ ।

## ପ୍ରକୃତିର ନିୟମକୁ ବିଜ୍ଞାନ ବିରୋଧ କରେ ନାହିଁ—

ଯଦି ଆମର ହାର୍ବୋମିନରାଲ ଔଷଧ ସାହାଯ୍ୟରେ ରୋଗୀର ଚିକିତ୍ସା ଦାୟିତ୍ୱ ନେବାକୁ ପଡ଼େ ତାହାହେଲେ ପ୍ରଥମେ ରୋଗୀର ପ୍ରକୃତି, ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ରୋଗଟିକୁ ନିର୍ଣ୍ଣୟ କରିବାକୁ ହୁଏ । ଏଥି ସହିତ ପ୍ରୟୋଗ ବିଧି ପୁସ୍ତିକାଟି ଉତ୍ତମରୂପେ ଅଧ୍ୟୟନ କରି ଔଷଧଟି ନିର୍ବାଚନ କରିବାକୁ ହୁଏ । ଔଷଧଟିର କାର୍ଯ୍ୟକାରିତା ଦୃଷ୍ଟିରୁ କେଉଁ କେଉଁ ଖାଦ୍ୟ ପାନୀୟ ବାରଣ କରିବା ଦରକାର ତାହା ମଧ୍ୟ ରୋଗୀକୁ ଜଣାଇ-ଦେବା ଆବଶ୍ୟକ । ଏକଥା ମନେ ରଖିବାକୁ ହେବ "ଔଷଧର ଗୁଣ ସୀମିତ" ଏହା କେବଳ ପ୍ରକୃତିକୁ ସାହାଯ୍ୟ କରିବା ପାଇଁ ଅଭିପ୍ରେତ । ଏଣୁ ପ୍ରକୃତିର ନିୟମକୁ ଉପେକ୍ଷା କରି ଚିକିତ୍ସା କାର୍ଯ୍ୟରେ ବ୍ରତୀ ହେଲେ ଆଶାନୁରୂପ ଫଳ ମିଳେ ନାହିଁ । ଏଣୁ ଚିକିତ୍ସା କ୍ଷେତ୍ରରେ ପ୍ରକୃତିର ନିୟମଗୁଡ଼ିକ ନିଷ୍ଠାର ସହ ପାଳନ କରିବା ଆବଶ୍ୟକ ।

ଏକଥା ସତ୍ୟ, ଆମ୍ଭେମାନେ ଏକ ବୈଜ୍ଞାନିକ ଯୁଗରେ ବାସ କରୁଅଛୁଁ । ଏଣୁ ଆମକୁ ବିଜ୍ଞାନ ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ହେବ କିନ୍ତୁ ବିଜ୍ଞାନର ଦ୍ୱାହିଦେଇ ବିଜ୍ଞାନର ଜନନୀ ପ୍ରକୃତିକୁ ଅବହେଳା କରାଯାଇ ନ ପାରେ ।

ଲୋକେ ମନେ କରୁଛନ୍ତି, ନବାବିଷ୍କୃତ ଔଷଧ, ଟନିକ, ଇଞ୍ଜେକ୍‌ସନ ପ୍ରଭୃତି ରୋଗୀର ସମସ୍ତ ଚିକିତ୍ସା ଦାୟିତ୍ୱ ନେବ—ସେ ସ୍ଥଳରେ ନିଜର କିଛି ଇତି କର୍ତ୍ତବ୍ୟ ନାହିଁ । ଏହା ଏକ ଭ୍ରାନ୍ତ ଧାରଣା । ଅବିଚାରିତ ଭାବେ କଡ଼ା ଔଷଧ ବ୍ୟବହାର କରିବା ଦ୍ୱାରା ଯେଉଁ ଉପସର୍ଗ ଜନ୍ମେ, ତାହା ସ୍ଥଳବିଶେଷରେ ମୂଳ ରୋଗଠାରୁ ଅଧିକ ଯନ୍ତ୍ରଣାପ୍ରଦ । କଡ଼ା ଔଷଧ ବ୍ୟବହାର ସମୟରେ ଆଗପଛ ବିଚାରି ଔଷଧ ପ୍ରୟୋଗ କରିବା ବିଜ୍ଞାନସମ୍ମତ ପନ୍ଥା । ଏଣୁ ଆମ ହାର୍ବୋମିନରାଲ ଔଷଧରେ କୌଣସି ପ୍ରତିକ୍ରିୟା ନ ଥିଲେ ମଧ୍ୟ କୌଣସି ସ୍ଥଳରେ ଏହାର ଅପପ୍ରୟୋଗ ହେବା ବାଞ୍ଛନୀୟ ନୁହେଁ ।

## ପ୍ରାଣଶକ୍ତି ରୋଗର ଶ୍ରେଷ୍ଠ ପ୍ରତିଷେଧକ—

ଭାଇଟାଲିଟି (ପ୍ରାଣଶକ୍ତି) ଶବ୍ଦଟିକୁ ଲୋକେ ଭୁଲ ଅର୍ଥରେ ଗ୍ରହଣ କରିଥାନ୍ତି । ଏଣୁ ଏହି ଶବ୍ଦଟିକୁ ସ୍ଥୂଳ ଅର୍ଥରେ ଦେହର ଶକ୍ତି ଭାବରେ ଗ୍ରହଣ କରିଥାନ୍ତି । ମାତ୍ର ଚିକିତ୍ସା ବିଜ୍ଞାନ ଦୃଷ୍ଟିରୁ ଏହା ହେଉଛି "ଅଗଣିତ କୋଷ ସମୂହର କାର୍ଯ୍ୟ । କିନ୍ତୁ ଆମେ ବୁଝୁ, ଏହି କୋଷଗୁଡ଼ିକର କ୍ଷୟ, ବୃଦ୍ଧି, ଜନନ, ସ୍ଥିତି କେବଳ ଶାରୀରିକ ବ୍ୟାପାର । କିନ୍ତୁ ସୂକ୍ଷ୍ମ ବିଚାର ଦୃଷ୍ଟିରୁ ଏହା ହେଉଛି, ଶରୀର, ମନ ଓ ଆତ୍ମାର ମିଳିତ ବ୍ୟାପାର ।

ମାନସିକ ପ୍ରାଣଶକ୍ତି ଶାରୀରିକ ଓ ଆତ୍ମିକ ଶକ୍ତିଠାରୁ ଅଧିକ ପ୍ରଭାବଶାଳୀ । ଏଣୁ ଆମର ପୂର୍ବାଗ୍ରାର୍ଯ୍ୟଗଣ ଘୋଷଣା କରିଥିଲେ,"ମନଃ ଏବ ମନୁଷ୍ୟାଣାଂ କାରଣଂ ବନ୍ଧ ମୋକ୍ଷୟୋଃ" ରୋଗ, ଶୋକ, ସୁଖ ଦୁଃଖର କାରଣ ହେଉଛି ମନ । ଏହି ମନର ପ୍ରଭାବ ଯୋଗୁଁ ଜଣେ କ୍ଷୀଣ ଶରୀର ହେଲେ ମଧ୍ୟ ଦୀର୍ଘ ଦିନ ବଞ୍ଚିପାରେ । ଦୃଢ଼ମନା ବ୍ୟକ୍ତି ଦୁର୍ବଳମନା ବ୍ୟକ୍ତିଠାରୁ ଯେ କୌଣସି ରୋଗରୁ ଶୀଘ୍ର ମୁକ୍ତିଲାଭ କରିପାରେ । ଏଣୁ ଆମର କାମ୍ୟ ହେଉଛି "ସୁସ୍ଥ ଶରୀର ଓ ସୁସ୍ଥ ମନ ।"

ଆତ୍ମିକ ପ୍ରାଣଶକ୍ତି ହେଉଛି, ମଣିଷପାଇଁ ଏକ ଶକ୍ତିଶାଳୀ ବିଭାବ । କୌଣସି ବ୍ୟକ୍ତି ରୂପ, ଗୁଣ ଓ ଧନରେ ପରିପୂର୍ଣ୍ଣ ହେଲେ ଲୋକ ମର୍ଯ୍ୟାଦା ପାଏ ନାହିଁ । କିନ୍ତୁ ବାସ୍ତ-ବରେ ଯେ ବିନୀତ, ଆଗ୍ରହ ବିଗ୍ରହସମ୍ପନ୍ନ–ଆବିଳତାରୁ ମୁକ୍ତ–ସେ ସବୁସ୍ଥଳରେ ଲୋକ-ମର୍ଯ୍ୟାଦାପାଏ । ଏହାର ଅର୍ଥ ନୁହେଁ, ଲୋକେ ପ୍ରାଣଶକ୍ତି ପାଇଁ ସନ୍ୟାସୀ ହୋଇଯିବେ । ଏହାର ପ୍ରକୃତ ମୂଳ ଉଦ୍ଦେଶ୍ୟ–ମଣିଷ ନିଜର ଆଚରଣରେ ଭଗବାନଙ୍କ ନିକଟବର୍ତ୍ତୀ ହେବାକୁ ଉଦ୍ୟମ କରିବ ଏବଂ ପ୍ରତ୍ୟେକ କାର୍ଯ୍ୟକୁ ଭଗବତ୍ ଅଭିପ୍ରେତ ବୋଲି ଧରି-ନେବ । ଏହି ଚିନ୍ତାଧାରାକୁ ଲୋକେ ପଳାୟନପନ୍ଥୀ ବୋଲି କହିପାରନ୍ତି, କିନ୍ତୁ ଆମର ଦୃଢ଼ ବିଶ୍ୱାସ, ମନଷ୍ୟ ପ୍ରତି କ୍ଷେତ୍ରରେ ଈଶ୍ୱରଙ୍କର ବଶ୍ୟତା ସ୍ୱୀକାରକଲେ, ପ୍ରତ୍ୟେକ ସମସ୍ୟା ମନୁଷ୍ୟର ବଶ୍ୟତା ସ୍ୱୀକାର କରିନେବ । ମନଷ୍ୟ ଈଶ୍ୱର ଦ୍ରୋହୀ କାର୍ଯ୍ୟକଲେ ମନୁଷ୍ୟର ଅଧୀନ ପ୍ରତ୍ୟେକ ବସ୍ତୁ ମନୁଷ୍ୟର ବିଦ୍ରୋହୀ ହୋଇପଡ଼ନ୍ତି । ଔଷଧ ମଧ୍ୟ ସେଥିରୁ ବାଦ ପଡ଼େ ନାହିଁ । ଜୀବନଧାରାର ଶଙ୍ଖଳା ବିଶୃଙ୍ଖଳା ଅନୁଯାୟୀ ଆମର ଶାରୀରିକ ସ୍ୱାସ୍ଥ୍ୟ ନିୟନ୍ତ୍ରିତ ହୋଇଥାଏ । ଏଣୁ ମନେ ରଖିବାକୁ ହେବ–କର୍ତ୍ତବ୍ୟପାଇଁ ଜୀବନ; ମାତ୍ର ବିଳାସପାଇଁ ଜୀବନ ଉଦ୍ଦିଷ୍ଟ ନୁହେଁ ।

## ସ୍ୱାସ୍ଥ୍ୟପାଇଁ ପୁଷ୍ଟିକର ଖାଦ୍ୟ, ଖାଦ୍ୟର ପଚନ, ପାଚନୀକରଣ ଓ ଉତ୍ସାରଣ କ୍ରିୟାର ଗୁରୁତ୍ୱ–

ରୋଗୀ ସମୟ ସମୟରେ ନାନା ଜଟିଳ ରୋଗ ଓ ଉପସର୍ଗ ନେଇ ଚିକିତ୍ସକର ପରାମର୍ଶ ପାଇଁ ଆସେ । ତାର ମୂଳ ଲକ୍ଷ୍ୟ ହେଲା ତାର ରୋଗ ଯନ୍ତ୍ରଣା ଦୂର ହେବା ସଙ୍ଗେ ସଙ୍ଗେ ପୂର୍ବର ପ୍ରାଣଶକ୍ତି ଫେରିପାଇବ । ମାତ୍ର ଏକଥା ସାଧାରଣ ଲୋକେ ବୁଝିବାକୁ ଭୁଲିଯାଆନ୍ତି ଯେ, "ଉତ୍ତମ ସ୍ୱାସ୍ଥ୍ୟରୁ ପ୍ରାଚୁର୍ଯ୍ୟଯୁକ୍ତ ପ୍ରାଣଶକ୍ତି ମିଳେ ।" ଏଣୁ ସ୍ୱାସ୍ଥ୍ୟର ପ୍ରତିକୂଳ ଆଚରଣ ନ ଛାଡ଼ିଲେ, ଉତ୍ତମ ସ୍ୱାସ୍ଥ୍ୟଲାଭ ଅସମ୍ଭବ–ଏଣୁ ଭଗ୍ନ ସ୍ୱାସ୍ଥ୍ୟର ପୁନର୍ଲାଭ ତଥା ପ୍ରାଣଶକ୍ତିର ପୁନରାହରଣ ଦୁରାଶା ମାତ୍ର ।

ଏହି ପୁସ୍ତିକାର ତୃତୀୟ ପ୍ରକରଣରେ "ପ୍ରକୃତି ଅନୁରୂପ ଚିକିତ୍ସା" ପ୍ରକରଣରେ ନଷ୍ଟ ସ୍ୱାସ୍ଥ୍ୟ ଓ ପ୍ରାଣଶକ୍ତିର ପୁନର୍ଲାଭପାଇଁ ରୋଗୀ ନିଜେ କଅଣ କରି ପାରିବ—ତାହା ବୁଝାଇ ଦିଆଯାଇଅଛି ।

ଏ ସ୍ଥଳରେ ପୁଷ୍ଟିକର ଖାଦ୍ୟ, ଖାଦ୍ୟର ପଚନ ସାତ୍ମୀକରଣ ଉତ୍ସାରଣ ପ୍ରକ୍ରିୟା ବିଷୟରେ କିଞ୍ଚିତ ଆଲୋଚନା କରାଯାଇଅଛି ।

## ପୁଷ୍ଟିକର ଖାଦ୍ୟ—

ପୁଷ୍ଟିକର ଖାଦ୍ୟର ଯଥାର୍ଥ ଅର୍ଥ ହେଲା,—ଯଥା ସମୟରେ ଯଥାର୍ଥ ଖାଦ୍ୟ ଗ୍ରହଣ କରିବା । ଏହାର ଅର୍ଥ ନୁହେଁ, କେବଳ ମସଲା, ତେଲ ଦିଆଯାଇଥିବା ଗୁଡ଼ାଏ ଦାମୀ ଖାଦ୍ୟ ଖାଇବା । ଯଥାର୍ଥ ଖାଦ୍ୟର ଅର୍ଥ ହେଲା—ବ୍ୟକ୍ତିଗତ ରୁଚି ଅନୁଯାୟୀ ଅନୁକୂଳ ଖାଦ୍ୟ ଗ୍ରହଣ କରିବା । ଜଣକପାଇଁ ମାଂସ ଅନୁକୂଳ ହୋଇପାରେ, ଅନ୍ୟ ପାଇଁ ଏହା ପ୍ରତିକୂଳ । ଏହି ହେତୁରୁ ବତକ, କୁକୁଡ଼ା ମାଂସ ଅଣ୍ଡା ଖାଉଥିବା ଲୋକଠାରୁ ଭାତ, ଶାଗ ଖାଉଥିବା ବ୍ୟକ୍ତି ଅଧିକ ଶକ୍ତିଯୁକ୍ତ ଥିବାର ଉଦାହରଣ ବିରଳ ନୁହେଁ ।

ବୈଜ୍ଞାନିକ ଦୃଷ୍ଟିରୁ ପୁଷ୍ଟିକର ଖାଦ୍ୟର ଅର୍ଥ ହେଲା, ଯାହା କି ବ୍ୟକ୍ତିବିଶେଷଙ୍କୁ ଆବଶ୍ୟକୀୟ କ୍ଷୟ ପରିପୂରଣ କରି ପୁଷ୍ଟିକାରିତା ଯୋଗାଇବ । କଳଦ୍ୱାରା ସଫା ଓ ସରୁ କରାଯାଉଥିବା ଚାଉଳ ଓ ପାଉଁରୁଟିରେ ପୁଷ୍ଟିକାରିତା ଗୁଣ ଅଳ୍ପ ପରିମାଣରେ ଥାଏ । ଦୁର୍ବଳ ପାକସ୍ଥଳୀ ପାଖରେ ଗୁରୁପାକ ଖାଦ୍ୟ—ସ୍ୱଳ୍ପ ଆୟ ତୁଳନାରେ ମୂଲ୍ୟବାନ ଖାଦ୍ୟ ଜନସାଧାରଣଙ୍କ ନିକଟରେ ଏକ ସମସ୍ୟା ସୃଷ୍ଟିକରେ । ଏହି ସମସ୍ୟାର ସମାଧାନ ପାଇଁ ସାଧାରଣ ଖାଦ୍ୟ ସହିତ ଡିଚେନଙ୍କ ପ୍ରସ୍ତୁତ "ଆଲବୋସାଙ୍ଗ" ମାତ୍ର ଦୁଇ ଗ୍ରାମଚ ବ୍ୟବହାର କଲେ, ପୁଷ୍ଟିକାରକ ଖାଦ୍ୟାଭାବ ପୂରଣ କରିବା ସଙ୍ଗେ ଉତ୍ତମ ସ୍ୱାସ୍ଥ୍ୟଲାଭର ସହାୟକ ହୋଇଥାଏ ।

## ପରିପାକ ବା ପଚନ କ୍ରିୟା—

ସୁପରିପାକ ଉତ୍ତମ ସ୍ୱାସ୍ଥ୍ୟ ଲାଭର ମୂଳ ଭିତ୍ତି ସ୍ୱରୂପ । ଆମେ କଅଣ ଖାଉଁ, କିପରି ଖାଉ, ତା ଉପରେ ଉତ୍ତମ ପରିପାକ କ୍ରିୟା ନିର୍ଭରକରେ । ଆମେ ଅନେକ ସମୟରେ ଅପଥ୍ୟ ଖାଉ ଓ ସ୍ଥଳ ବିଶେଷରେ ସୁପଥ୍ୟକୁ ଅଯଥାର୍ଥ ଭାବରେ ଖାଉ ।

ଖାଦ୍ୟର ପଚନକ୍ରିୟାକୁ ଠିକ୍ ରଖିବା ଏବଂ ତହିଁରୁ ପୁଷ୍ଟିକାରିତା ଗୁଣକୁ ଗ୍ରହଣ କରିବାକୁ ହେଲେ ଖାଦ୍ୟ ପଦାର୍ଥକୁ ଉତ୍ତମରୂପେ ଚୋବାଇ ମଣ୍ଡକରି ଦେବାକୁ ହେବ । ମଣ୍ଡ ହୋଇ ନ ଥିବା ଖାଦ୍ୟ ପାକସ୍ଥଳୀକୁ ଗଲେ ପଚନ କାର୍ଯ୍ୟରେ ବାଧା ସୃଷ୍ଟିକରେ । ଏଣୁ ଖାଦ୍ୟର ପୁଷ୍ଟିକାରିତା ଗୁଣ ମିଳେ ନାହିଁ । ଖାଦ୍ୟକୁ ଉତ୍ତମରୂପେ ଚୋବାଇଲେ ପାକସ୍ଥଳୀକୁ ଅପରିମିତ ଖାଦ୍ୟ ଯାଏ ନାହିଁ । ଦୂଷିତ ଦନ୍ତ ଓ ମନ୍ଦ ପରିପାକ କ୍ରିୟା ଅଙ୍ଗାଙ୍ଗୀ ଭାବରେ ସମ୍ପୃକ୍ତ । ଉତ୍ତମ ପରିପାକପାଇଁ ସୁସ୍ଥ ଦାନ୍ତ ଆବଶ୍ୟକ । ଏଣୁ ଦାନ୍ତର ଯଥାର୍ଥ ଯତ୍ନ ନେବା ଆବଶ୍ୟକ।

ଖାଦ୍ୟପଦାର୍ଥ ଠିକ୍ ଭାବରେ ହଜମ ହେଉଛି କି ନାହିଁ ତାହା ସହଜରେ ଜାଣି ହୁଏ ନାହିଁ । ଯେଉଁମାନେ ବହୁ ପରିମାଣରେ ଖାଇପାରନ୍ତି (ଅର୍ଥାତ୍ ଅଜଗିଳା ହୋଇ ଖାଇଥାନ୍ତି) ସେମାନେ ମନେ କରନ୍ତି, ସେମାନେ ଖୁବ୍ ହଜମ କରିପାରୁଛନ୍ତି ଏବଂ ତାଙ୍କର ପରିପାକ କ୍ରିୟା ଠିକ୍ ଅଛି । ମାତ୍ର ଏ ବିଶ୍ୱାସ ସମ୍ପୂର୍ଣ୍ଣ ଠିକ୍ ନୁହେଁ । ଯେଉଁ ପରିମାଣରେ ସେମାନେ ଖାଦ୍ୟ ଖାଉଛନ୍ତି, ତଦନୁଯାୟୀ ସେମାନଙ୍କର ପୁଷ୍ଟିକାରିତା ଜନ୍ମୁଛି କି ନାହିଁ ଓ ସେମାନଙ୍କର ଅନୁରୂପ ଶାରୀରିକ୍ ଶକ୍ତି ଓ ମାନସିକ ଶକ୍ତି ବଢ଼ୁଛି କି ନାହିଁ, ତହିଁରୁ ସୂଚିତ ହୁଏ । ଅତ୍ୟଧିକ ଚିନ୍ତା, କଫି ଓ ଧୂମପାନ ହେତୁରୁ ପରିପାକ କ୍ରିୟା ଯେ ବାଧାପ୍ରାପ୍ତ ହୁଏ—ଏହା ସର୍ବବାଦୀସମ୍ମତ ।

ସାତ୍ମୀକରଣ—

ଜଣେ ଲୋକ ଠିକଣା ଭାବରେ ଖାଉଛି, ଅଥଚ ତାର ପୁଷ୍ଟିସାଧିତ ହେଉ ନାହିଁ, ଦେହ ଶୋଷା ଦେଖାଯାଉଛି । ଏପରି ସ୍ଥଳରେ ବୁଝିବାକୁ ହେବ, ତାର ସାତ୍ମୀକରଣ ପ୍ରକ୍ରିୟା ଠିକ୍ ଭାବରେ ହେଉ ନାହିଁ । ଏହି ପୁସ୍ତିକାର ତୃତୀୟ ଭାଗର ଚିକିତ୍ସା ପ୍ରକରଣରେ ଏହି ସାତ୍ମୀକରଣ କ୍ରିୟା କିପରି ଜ୍ଞାତ ଓ ଅଜ୍ଞାତ କାରଣରୁ ବାଧାପ୍ରାପ୍ତ ହୁଏ, ତାହା ଆଲୋଚନା କରାଯାଇଅଛି ।

ସ୍ୱାସ୍ଥ୍ୟହାନିର ସାଧାରଣ କାରଣ—ସ୍ନାୟବିକ ବିଶୃଙ୍ଖଳା ଓ ରକ୍ତ ଚିତ୍ରର ପରିବର୍ତ୍ତନ—

ସ୍ନାୟବିକ ବିଶୃଂଖଳା—ସ୍ନାୟବିକ ପ୍ରକ୍ରିୟାର ସ୍ୱାଭାବିକତା ଉପରେ ଉତ୍ତମ ସ୍ୱାସ୍ଥ୍ୟ ନିର୍ଭରକରେ । କିନ୍ତୁ ଆମ୍ଭେମାନେ ବର୍ତ୍ତମାନ ଯେଉଁ ଉନ୍ନତ ସଭ୍ୟ ଯୁଗରେ ଚଳୁଛୁ, ତାହା ଆମର ମସ୍ତିଷ୍କ ଓ ସ୍ନାୟୁମଣ୍ଡଳୀକୁ ଅଧିକ ଭାରାକ୍ରାନ୍ତ କରିଦେଉଅଛି ।

ଏପରି କି ସଦ୍ୟଜାତ ଶିଶୁ ମଧ୍ୟ ମାତୃଗର୍ଭରୁ ସ୍ନାୟୁବିକାର ନେଇ ଜନ୍ମଲାଭ କରୁଅଛି । ଏହି ବିକାରର ସର୍ବୋତ୍କୃଷ୍ଟ ପ୍ରାକୃତିକ ପ୍ରତିଷେଧକ ହେଲା, ନିୟମିତ ବିଶ୍ରାମ ଓ ନିଦ୍ରାଯିବା ଓ ମୁଣ୍ଡକୁ ଅନୁତ୍ତେଜିତ ରଖିବା । ଜୀବନର ଯଥାର୍ଥ ଚିନ୍ତାଦର୍ଶ ରହିଲେ ମସ୍ତିଷ୍କରେ ଅଯଥା ଉତ୍ତେଜନା ସୃଷ୍ଟି ହୁଏ ନାହିଁ । ଯଦି କେବଳ ଆମୋଦ ପ୍ରମୋଦ ଯଶ ଅର୍ଥ ଆଶାରେ ପାଗଳ ହେଉଁ ତାହାହେଲେ ସେଗୁଡ଼ିକ ଦିନେ ନା ଦିନେ ଶତ୍ରୁ ଭାବରେ ଆତ୍ମପ୍ରକାଶ କରିବେ ।

ଯେଉଁ ସ୍ରଷ୍ଟା ଆମକୁ ଜନ୍ମ ଦେଇଛନ୍ତି, ତାଙ୍କର ନିର୍ଦ୍ଦେଶିତ ପଥରେ ଆମେ ନିଷ୍ଠାଶୀଳ ହୋଇ କର୍ତ୍ତବ୍ୟ ସମ୍ପାଦନ କଲେ ସେ ଅବଶ୍ୟ ଆମକୁ ନିରୋଗ ଜୀବନଯାତ୍ରା ସହିତ ମାନବ ଜୀବନକୁ ସଫଳ କରିବାରେ ସହାୟକ ହେବେ । ଜୀବନର ଏହି ଆଦର୍ଶଲାଭ କରିବା ପାଇଁ ପ୍ରକୃତିର ସାହାଯ୍ୟ ଗ୍ରହଣ କରିବୁ । ସ୍ଥଳବିଶେଷରେ ଆମର ଦୁର୍ବଳ ସ୍ନାୟୁଗୁଡ଼ିକକୁ ଦୃଢ଼ ଓ ସକ୍ରିୟ କରିବା ପାଇଁ ବୈଜ୍ଞାନିକ ପନ୍ଥା ଅବଲମ୍ବନ କରିବୁ ।

ସ୍ନାୟୁବିକାରଗୁଡ଼ିକ ପ୍ରାକୃତିକ ତଥା ଅପ୍ରାକୃତିକ କାରଣରୁ ଦେଖାଦେଇଥାଏ । ରୋଗ, ମାନସିକ ଶାନ୍ତି, କଠିନ ପରିଶ୍ରମ, ଚିନ୍ତା, ଦୁଃଖ ଓ ଜୀବନର ଉତ୍‌ଥାନପତନ ପ୍ରାକୃତିକ କାରଣର ଅନ୍ତର୍ଗତ ।

ଅପ୍ରାକୃତିକ କାରଣ ଯାହା ପ୍ରକୃତିର ବିରୁଦ୍ଧ କାର୍ଯ୍ୟ । ପ୍ରାକୃତିକ ପ୍ରେରଣାର ଅମିତଗ୍ରହ ହେଉଛି, ଅପ୍ରାକୃତିକ କାରଣର ଅନ୍ତର୍ଗତ । ଗୋଟିଏ ମହମବତୀରେ ନିଆଁ ଲଗାଇ ଦେଲେ, ତାହା ଯେପରି ଅଗରୁ ମୂଳ ପର୍ଯ୍ୟନ୍ତ ଜଳିଯାଏ, ତଦ୍ରୂପ ପ୍ରାକତିକ ପ୍ରେରଣାଗୁଡ଼ିକୁ ନିରଙ୍କୁଶ ଭାବରେ ଛାଡ଼ି ଦେଲେ, ସେମାନେ ମନୁଷ୍ୟକୁ ଧ୍ୱଂସପଥକୁ ଟାଣିନିଅନ୍ତି । ଯେଉଁମାନେ ପ୍ରାକୃତିକ ପ୍ରେରଣାର ବଶୀଭୂତ ହୋଇପଡ଼ନ୍ତି, ସେମାନେ ତାର ସମୁଚିତ ଦଣ୍ଡ ପାଆନ୍ତି । ଏକଥା ମନେ ରଖିବାକୁ ହେବ, କେହି ପ୍ରକୃତିର ରୋଷ କଟାକ୍ଷରୁ ମୁକ୍ତିପାଏ ନାହିଁ ।

ସ୍ନାୟବିକ ବିକାରଗୁଡ଼ିକ ପୁଷ୍ଟିକର ଖାଦ୍ୟର ଅଭାବ, ପରିପାକ ତଥା ସାତ୍ମୀ-କରଣ ପ୍ରକ୍ରିୟାର ଦୋଷ ହେତୁ ଦେଖାଯାଇଥାଏ । ଯଥା ସମୟରେ ଓ ଯଥାର୍ଥ ଭାବରେ ଏହାର ନିରାକରଣ କରାଗଲେ, ଏହା ସହଜରେ ଦୂର ହୋଇଥାଏ । ସ୍ନାୟବିକ ବିକାର ଯୋଗୁଁ ପରିପାକଶକ୍ତି, ସାତ୍ମୀକରଣ ତଥା ଉତ୍ସାରଣ ପ୍ରକ୍ରିୟା ବିକୃତ ହେବା ସଙ୍ଗେ ସଙ୍ଗେ ବ୍ୟକ୍ତିର ରକ୍ତ ଚିତ୍ରକୁ ମଧ୍ୟ ବିକାରଗ୍ରସ୍ତକରିଥାଏ । ଶରୀରରେ ଉପରୋକ୍ତ ବିକାରଗୁଡ଼ିକ ଦେଖାଗଲେ ସାଧାରଣ ରୋଗର ଚିକିତ୍ସା ମଧ୍ୟ ସମସ୍ୟା ସଂକୁଳ ହୋଇପଡ଼େ ।

ସାଧାରଣ ଚିକିତ୍ସା କ୍ଷେତ୍ରରେ ସ୍ନାୟବିକ ବିକାରର ଚିକିତ୍ସା କିପରି ଗୁରୁତ୍ୱପୂର୍ଣ୍ଣ ତାହା "A brief of new approach to modern medicine" ନିବନ୍ଧର ନିମ୍ନ ଉଦ୍ଧୃତାଂଶରୁ ସୁସ୍ପଷ୍ଟ ହେବ ।

"ପ୍ରାୟ ଖ୍ରୀଷ୍ଟପୂର୍ବ ଅର୍ଦ୍ଧ ମିଲିନିୟମ ପୂର୍ବେ ସକ୍ରେଟିସ ସୈନ୍ୟବାହିନୀରୁ ଅବସର ନେଇ ଗ୍ରୀକ୍ ଦେଶବାସୀଙ୍କୁ କହିଥିଲେ, ଏହି ବର୍ବର ଥେରାସିଆନମାନେ ଗୋଟିଏ ଦୃଷ୍ଟିରୁ ସଭ୍ୟ ଗ୍ରୀକମାନଙ୍କଠାରୁ ଉନ୍ନତ । ସେମାନେ ଭଲଭାବରେ ଜାଣନ୍ତି ମନକୁ ଉପେକ୍ଷା କରି ଶରୀର ଭିତରର କୌଣସି ରୋଗର ସଫଳ ଚିକିତ୍ସା ବିଧାନ କରିବା ସମ୍ଭବପର ନୁହେଁ । ଏହି ଜ୍ଞାନର ଅଭାବରୁ ହେଲାସ୍‌ର ଦକ୍ଷ ଚିକିତ୍ସକଗଣ ଅନେକ ରୋଗର କାରଣ ଓ ନିରାକରଣ ପନ୍ଥା ଜାଣନ୍ତି ନାହିଁ ।"

## ରକ୍ତ ଚିତ୍ରର ପରିବର୍ତ୍ତନ—

ପୂର୍ବରୁ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି, ଶରୀରର ରକ୍ତ ଯେ କୌଣସି କାରଣରୁ ଦୂଷିତ ହୋଇପାରେ ଏବଂ ଦୂଷିତ ରକ୍ତ ଯୋଗୁଁ ସ୍ନାୟବିକ ତଥା ପରିପାକ ପ୍ରକ୍ରିୟାର ବିଷମତା ଜନ୍ମିପାରେ । ଚିକିତ୍ସା ପ୍ରକରଣରେ ରକ୍ତର ବିଭିନ୍ନ ଅବସ୍ଥାରେ ଆଲୋଚନା କରାଯାଇଅଛି । ରକ୍ତ ଚିତ୍ରର ପରିବର୍ତ୍ତନ ପାଇଁ ନିମ୍ନଲିଖିତ ଦୁଇଟି ରୋଗ କିପରି ବିଶେଷ ଦାୟୀ ତାହା ନିମ୍ନଲିଖିତ ଆଲୋଚନାରୁ ସୂଚିତ ହେବ ।

## ପୁରାତନ ମ୍ୟାଲେରିଆ ଜ୍ୱର—

ଏହି ରୋଗ ଭାରତବର୍ଷରେ ଏକ ଆତଙ୍କର କାରଣ ହୋଇଅଛି । ସାଧାରଣ ଚିକିତ୍ସାଦ୍ୱାରା ଏହି ରୋଗ ଉପଶମ ହୋଇଥିଲେ ମଧ୍ୟ ଏହାର ବିଷ ମଣିଷ ରକ୍ତରେ ବର୍ଷାଧିକକାଳ ଲୁଚିଛପି ରହେ । ମ୍ୟାଲେରିଆର ଆକ୍ରମଣ ପଚିଶଦିନ ବା ପଚିଶବର୍ଷ ତଳେ ହୋଇଥାଉନା କାହିଁକି ଏହାର ବିଷ ଶରୀର ଭିତରେ ଧ୍ୱଂସସାଧନ କରିଚାଲିଥାଏ । ଏକଥା ଅନେକ ଧାରଣା କରିପାରି ନଥାନ୍ତି । ଏକଥା ସତ୍ୟ ପୁରାତନ ବା ନୂତନ ଅବସ୍ଥାରେ କୌଣସି ଆକାରରେ ପରିପାକ କ୍ରିୟାକୁ ନିଶ୍ଚିତ ଭାବରେ ପ୍ରଭାବିତ କରିଥାଏ । କେତେକ୍ରେ ରୋଗୀଙ୍କ କ୍ଷେତ୍ରରେ ସାମାନ୍ୟ ଜ୍ୱରର ଲକ୍ଷଣ ପ୍ରକାଶ ପାଏ, କେତେକଙ୍କଠାରେ ଜ୍ୱରର ଉତ୍ତାପ ଥର୍ମୋମିଟରରେ ଜଣାପଡ଼େ ନାହିଁ ।

## ଯୌନ ବ୍ୟାଧି ପ୍ରଭବ—

ଯେଉଁମାନଙ୍କୁ ଔପସର୍ଗିକ ମେହ (ଗନୋରିୟା) ଫିରିଙ୍ଗ ରୋଗ (ସିଫିଲିସ୍) ଥରେ ମାତ୍ର ଆକ୍ରମଣ କରିଛି, ସେମାନେ ଉପଯୁକ୍ତ ଚିକିତ୍ସା ସମ୍ପୂର୍ଣ୍ଣରୂପେ କରି ନ ଥିଲେ ଦିନେନା ଦିନେ ସେମାନଙ୍କୁ ତାର ପରିଣାମ ଭୋଗ କରିବାକୁ ପଡ଼େ । ସାଧାରଣ ରୋଗ ଚିକିତ୍ସା କ୍ଷେତ୍ରରେ ଆଶୁ ଫଳର ଅଭାବ—ଉପଯୁକ୍ତ ଖାଦ୍ୟ ପାନୀୟ ବ୍ୟବହାର କରୁଥିବା ସ୍ଥଳରେ ସାଧାରଣ ସ୍ୱାସ୍ଥ୍ୟର ଅଭାବ ପ୍ରଭୃତି ଲକ୍ଷିତ ହେଉଥିଲେ—ତାର ମୂଳଭୂତ କାରଣ ଉପରୋକ୍ତ ଯୌନ ବ୍ୟାଧିର ପ୍ରଭାବ ବୋଲି ଧରିନେବାକୁ ହେବ । ବିଶିଷ୍ଟ ଚିକିତ୍ସା ବିଶାରଦମାନଙ୍କ ମତରେ ଏହି ରୋଗର ବିଷ ମନୁଷ୍ୟ ଶରୀରରେ ବର୍ଷାବଧିକାଳ ଲୁଚିରହେ । ଏଥିପାଇଁ ଯଥା ସମୟରେ ନିର୍ଦ୍ଦିଷ୍ଟ ଚିକିତ୍ସା କରାଯାଇଥିଲେ ମଧ୍ୟ ମଝିରେ ମଝିରେ ରକ୍ତଶୋଧନ କରାଇନେବା ଆବଶ୍ୟକ । ପରୀକ୍ଷାଦ୍ୱାରା କୌଣସି ଦୋଷ ଜଣାପଡ଼ୁ ନ ଥିଲେ ମଧ୍ୟ ଏହା ସମ୍ପୂର୍ଣ୍ଣରୂପେ ଗୁଲିଯାଇଛି ବୋଲି ଧାରଣା କରିବା ସମ୍ପୂର୍ଣ୍ଣ ଭୁଲ । ଏହା କହିବାଦ୍ୱାରା କାହାକୁ ଆତଙ୍କଗ୍ରସ୍ତ କରିବା ଆମର ଉଦ୍ଦେଶ୍ୟ ନୁହେଁ । ନିଜର ଭଗ୍ନସ୍ୱାସ୍ଥ୍ୟକୁ ଫେରିପାଇବା ପାଇଁ ଯାହାକି ବୈଜ୍ଞାନିକ ବିଗ୍ଚର ଓ ସୁଦୀର୍ଘ ଅନୁଭୂତିଦ୍ୱାରା ନିଃସନ୍ଦେହ ଭାବରେ ଫଳପ୍ରଦ ଓ ନିରାପଦ ବୋଲି ପ୍ରମାଣିତ ସେପରି କେତେକ ଉପାୟ ଏଠାରେ ଉଲ୍ଲେଖ କରାଯାଉଅଛି ।

---

# ଦ୍ରବ୍ୟ ଗୁଣ

# ଦ୍ୱିତୀୟ ଭାଗ

## ଡ଼ିଚେନଙ୍କ ହାର୍ବୋମିନରାଲ ଔଷଧର ପ୍ରୟୋଗ ମାତ୍ରା ସ୍ୱଳ୍ପ ପରିମାଣ ।

ଡିଚେନଙ୍କ ଔଷଧ ପ୍ରୟୋଗ ସମୟରେ କୌଣସି ସ୍ଥଳରେ ଔଷଧ ମାତ୍ରା ବିଷୟରେ ଉଲ୍ଲେଖ ନ ଥିଲେ ପିଲାମାନଙ୍କ ପାଇଁ ୧/୨ ବଟିକା ବୟସ୍କ ଲୋକମାନଙ୍କ ପାଇଁ ୧-୨ଟି ବଟିକା ବ୍ୟବହାର କରିବାକୁ ହୋଇଥାଏ ।

ପ୍ରତି ଔଷଧର ଲଘୁମାତ୍ରା ଓ ଗୁରୁମାତ୍ରା ଅଛି । ସାଧାରଣ ଅବସ୍ଥାରେ ଲଘୁ ମାତ୍ରାରେ ଔଷଧ ବ୍ୟବହାର କରାଇବା ଆବଶ୍ୟକ । ଯେଉଁ ସ୍ଥଳରେ ବେଦନାର ଶୀଘ୍ର ଉପଶମ କରାଇବା ଆବଶ୍ୟକ, ସେ ସ୍ଥଳରେ ତୀବ୍ର ଜ୍ୱର, ଶୂଳ ପ୍ରଭୃତି ସ୍ଥଳରେ ଗରୁମାତ୍ରାରେ ଔଷଧ ବ୍ୟବହାର କରାଯାଇଥାଏ । ସାଧାରଣତଃ ଘରିଘଣ୍ଟା ଅନ୍ତରରେ ଥରେ ଲେଖାଏ ଔଷଧ ବ୍ୟହାର କରାଯାଇପାରେ ।

ରୋଗ ଯନ୍ତ୍ରଣା ଉପଶମ ହେବା ସଙ୍ଗେ ସଙ୍ଗେ ଔଷଧ ବ୍ୟବହାରର ବ୍ୟବଧାନ ବଢ଼ାଇବାକୁ ହେବ । ଔଷଧ ଘରିଘଣ୍ଟା ଅନ୍ତରରେ ଦିଆଯାଉଥିଲେ, ସମୟର ବ୍ୟବ-ଧାନକୁ ଛଅଘଣ୍ଟା ଅନ୍ତରରେ ପରେ ଆଠଘଣ୍ଟା ଅନ୍ତରରେ ବ୍ୟବହାର କରିବା ଆବଶ୍ୟକ । ଏହା ସହିତ ଔଷଧର ମାତ୍ରା ମଧ୍ୟ କମାଇବା ଆବଶ୍ୟକ । ଏହି ପ୍ରକ୍ରିୟା ଦ୍ୱାରା ପ୍ରକୃତି ଶରୀରକୁ ସାହାଯ୍ୟ କରିବା ପାଇଁ ସୁଯୋଗ ପାଇଥାଏ ।

## ଅନୁପାନ ଔଷଧର ଗୁଣକୁ କ୍ଷିପ୍ରତର କରାଇବାରେ ସହାୟକ ହୁଏ—

ଗରମପାଣିରେ ଔଷଧକୁ ମିଶାଇ ବ୍ୟବହାର କରିବାଦ୍ୱାରା ବା ଔଷଧ ଖାଇବା-ପର ଗରମପାଣି ପିଇବାଦ୍ୱାରା ଔଷଧ କ୍ରିୟା କ୍ଷିପ୍ରତର ହୋଇଥାଏ । ମହୁ (୧/୪—୧/୨ ଗ୍ରାମଠ ପରିମାଣ) ଗୋଟିଏ ଉତ୍ତମ ଅନୁପାନ । ଫୁସ୍‌ଫୁସ୍, ଶ୍ୱାସନଳୀପାଇଁ ଉଦ୍ଦିଷ୍ଟ ଔଷଧ ମହୁ ସହ ବ୍ୟବହାର କଲେ ବିଶେଷ ଫଳ ମିଳିଥାଏ ।

## ଔଷଧ ବ୍ୟବହାରର ସମୟ—

ରୋଗଘ୍ନ ଔଷଧ ସମୂହକୁ ଖାଲି ପେଟରେ ଅଥବା ଖାଇବାର ତିନିଘଣ୍ଟା ପରେ ବ୍ୟବହାର କଲେ ଉତ୍ତମ ଫଳ ମିଳିଥାଏ ।

## ଡ଼ିଚେନଙ୍କ ଔଷଧ ବ୍ୟବହାର ସମୟରେ କୌଣସି ଧରାବନ୍ଧା ପଥ୍ୟର ଆବଶ୍ୟକତା ନାହିଁ –

ଏହି ଔଷଧ ବ୍ୟବହାର ସମୟରେ ପଥ୍ୟାପଥ୍ୟ ପାଇଁ କୌଣସି ବିଧି ନିର୍ଦ୍ଦେଶ ନାହିଁ । ଯାହା ରୋଗୀ ପକ୍ଷରେ ସହ୍ୟ ହେବ—ତାହାହିଁ ଖାଇବାକୁ ଦିଆଯାଇପାରେ । ଯାହା ଅସହ୍ୟ ହେବ, ତାହା ଛାଡ଼ିବାକୁ ହେବ, କିନ୍ତୁ ସାଧାରଣ କଥା—ପଥ୍ୟ ସର୍ବଦା ତରଳ ଓ ଲଘୁହେବା ଆବଶ୍ୟକ । ଏ ନିୟମଟି ପରିପାକ ପ୍ରକ୍ରିୟା ସଂକ୍ରାନ୍ତ ରୋଗର ଚିକିତ୍ସା ସମୟରେ ବିଶେଷ ପ୍ରଯୁଜ୍ୟ । ଚିକିତ୍ସା ଅବସରରେ ପଥ୍ୟାପଥ୍ୟ ବିଧାନର କୁଶଳତା ଉପରେ ଚିକିତ୍ସାର ସଫଳତା ନିର୍ଭର କରେ ।

## ମିଶ୍ରଣ

ଡିଚେନଙ୍କ ଗୋଟିଏ ଔଷଧ ଅନ୍ୟ ଗୋଟିଏ ଔଷଧ ମିଶାଇ ଖାଇବାରେ ବାଧା ନାହିଁ, ମାତ୍ର ଏହି ମିଶ୍ରଣର ଫଳାଫଳ ଚିକିତ୍ସକଙ୍କର ବିଗ୍ଧର ବୁଦ୍ଧି ଉପରେ ବିଶେଷ ନିର୍ଭରକରେ । ସ୍ଥଳ ବିଶେଷରେ ଦୁଇ ବା ତିନିଟି ଔଷଧ ଏକତ୍ର ଦିଆଯାଇପାରେ ।

## ଔଷଧର ଶକ୍ତିବର୍ଦ୍ଧନ

ହାର୍ବୋ ମିନରାଲ ଔଷଧଗୁଡ଼ିକର ଶକ୍ତି ମଧ୍ୟ ହୋମିଓପାଥିକ ପରି, ବର୍ଦ୍ଧିତ କରାଯାଇ ପାରିବ । ସେଥିପାଇଁ ଚିନିର ସୂକ୍ଷ୍ମ ଚୂର୍ଣ୍ଣ ବ୍ୟବହାର କରାଯାଇପାରେ ।

ହୋମିଓପାଥିକ ଚିକିତ୍ସା ବିଜ୍ଞାନରେ ଅଭିଜ୍ଞତା ଥିବା ଜନୈକ ଏଲୋପାଥିକ ଡାକ୍ତରଙ୍କ ମତରେ ଡିଚେନଙ୍କ ଆଲବୋସାଙ୍ଗ ୩× ଶକ୍ତି ଯୁକ୍ତ କରି ବ୍ୟବହାର କଲେ ବିଶେଷ ଗୁଣ ଦେଖାଇଥାଏ ।

## ଚିକିତ୍ସା ପାଇଁ ସେକର ଅବଶ୍ୟକତା

ଚିକିତ୍ସା ପାଇଁ ସେକଦେବା ଏକ ପୁରୁଣାକାଳିଆ ବ୍ୟବସ୍ଥା ବୋଲି ମନେ କରାଯାଇ ପାରେ । ମାତ୍ର ଏହାର ଉପକାରିତା ଅନସ୍ୱୀକାର୍ଯ୍ୟ । ବିଶେଷତଃ ଡିଟେନ୍ ଔଷଧସହ ଏହାର ବ୍ୟବହାର ବିଶେଷ ଫଳପ୍ରଦ । ଶୁଖିଲ ବା ଓଦା ସେକ ଦେବା ଅପେକ୍ଷା ବାମ୍ପଦ୍ୱାରା ସେକ ଦେବା ବିଶେଷ ଉପକାରକ ଭାବେ ପ୍ରମାଣିତ ।

ଖଣ୍ଡେ ପୂରା ଇଟା ବା ଅଧା ଇଟାକୁ ଭଲ କରି ଗରମ କରିବାକୁ ହେବ । ଖଣ୍ଡେ ଓଦାକନାକୁ ଭଲ ଭାବରେ ଚିପୁଡ଼ି ତା ଉପରେ ଗୁଡ଼ାଇବାକୁ ହେବ । ଏହିପରି ତିନି ଚାରି ଖଣ୍ଡ କନାକୁ ଗୋଟିକ ପରେ ଗୋଟିଏ ଗୁଡ଼ାଇବାକୁ ହେବ । ଲୁଣପାଣିରେ କନାକୁ ପ୍ରଥମରୁ ଭିଜାଇ ଦେବାକୁ ହେବ । ଅଥବା ସେ କନା ଉପରେ ଲୁଣ ଗଣ୍ଡା ଛିଞ୍ଚି ଦେବାକୁ ହେବ ।

ଇଟା ଉପରେ ଗୁଡ଼ା ଯାଇଥିବା କନାରୁ ଖଣ୍ଡିଏ ଖଣ୍ଡିଏ ଆଣି ରୋଗୀର ଆକ୍ରାନ୍ତ ସ୍ଥାନରେ ଭଲ କରି ଗୁଡ଼ାଇବାକୁ ହେବ । ଏପରି ସେକ ପେଶୀଶୂଳ, କାସ, ଶ୍ୱାସକଷ୍ଟ ରୋଗରେ ବ୍ୟବହାର କଲେ ଚମତ୍କାର ଫଳ ମିଳେ । ଉକ୍ତ କନାର ଉଷ୍ମା କମିଗଲେ, ତାହା ବାହାର କରି ନେବେ ଏବଂ ସେ ସ୍ଥାନକୁ ଶୁଖିଲ କନାରେ କିଛି ସମୟ ପର୍ଯ୍ୟନ୍ତ ଘୋଡ଼ାଇ ରଖିବାକୁ ହେବ ।

## ବାହ୍ୟ ପ୍ରୟୋଗ ପାଇଁ ମଲମ ବ୍ୟବହାର

ଭିତରକୁ ଔଷଧ ଖାଇବା ସଙ୍ଗେ ସଙ୍ଗେ ସ୍ଥଳ ବିଶେଷରେ ବାହ୍ୟିକ ପ୍ରୟୋଗ ଦ୍ୱାରା ଔଷଧର ଗୁଣକାରିକତା ଶକ୍ତି ବଢ଼ି ଯାଇଥାଏ; କିନ୍ତୁ ରୋଗକୁ ଦୂର କରିବା ପାଇଁ ସର୍ବଦା ଆଭ୍ୟନ୍ତରୀଣ ଔଷଧ ଉପରେ ଗୁରୁତ୍ୱ ଦେବା ଆବଶ୍ୟକ । ବାହ୍ୟିକ ପ୍ରୟୋଗ ଫଳରେ ବେଦନାର ଆଶୁ ଉପଶମ ଘଟିଥାଏ । ବିଶେଷତଃ ଗଳା, କାନ ବା ଅନ୍ୟ ସ୍ଥାନରେ ଉପୁଜିଥିବା ପୀଡ଼ା ଦୂର କରିବାରେ ଏହା ବିଶେଷ ସହାୟକ ହୋଇ-ଥାଏ । ଆଭ୍ୟନ୍ତରୀଣ ଔଷଧ ପ୍ରୟୋଗ ସଙ୍ଗେ ସଙ୍ଗେ ବାହ୍ୟିକ ଔଷଧ ପ୍ରୟୋଗ ଏକ ଚିରାଚରିତ ପନ୍ଥା ।

ହାର୍ଡୋସଲଫ୍ ବା ହିଲନ ମଲମ ତିଆର କରିବାକୁ ହେଲେ ଏକ ଭାଗ ଔଷଧ ସହିତ ପାଞ୍ଚଭାଗ କୌଣସି ଚିକଣିଆ ତେଲ ବା ଭେସଲିନ ମିଶାଇ ମଲମ

ପ୍ରସ୍ତୁତ କରି ବ୍ୟବହାର କରାଯାଇପାରେ । ଏ ସ୍ଥଳରେ ଡିଟେନ୍ ପ୍ରସ୍ତୁତ ରିପାଣ୍ଟୋ ବ୍ୟବହାର କଲେ ଆଶୁଫଳ ମିଳିଥାଏ ।

ଫୁସ୍‌ଫୁସ୍, ଛାତି, ତୁଣ୍ଡିକେରି (ଟନ୍‌ସିଲଇଟିସ୍) ଗଳାର ଅନ୍ୟାନ୍ୟ ବିକାର ଆଣ୍ଠୁ ଗଣ୍ଠି ଫୁଲା ବା ଦରଜ ସ୍ଥାନରେ ରୁବ୍ ଜନର ପ୍ରୟୋଗ ବିଶେଷ ଫଳପ୍ରଦ ଭାବରେ ବିବେଚିତ ।

ଡ଼ିଟେନଙ୍କ ଇଞ୍ଜେକ୍‌ସନ—

ଏହି ଇଞ୍ଜେକସନ ଗୁଡ଼ିକର ବିଶେଷତ୍ୱ ହେଉଛି, ଏହାର କୌଣସି ପ୍ରତିକ୍ରିୟା ହୁଏ ନାହିଁ—ସର୍ବଦା ନିରାପଦ ଓ ଆଶୁଫଳପ୍ରଦ ।

ଚବିଶଘଣ୍ଟା ପରେ ଥରେ ଏହି ଇଞ୍ଜେକସନ ଦିଆଯାଇଥାଏ । ରୋଗୀର ଅବସ୍ଥାର ଉନ୍ନତି ଘଟିଲେ ଇଞ୍ଜେକସନ ନେବାର ବ୍ୟବଧାନ ବଢ଼ାଇ ଦିଆଯାଇପାରେ ।

ପ୍ରତି ଇଞ୍ଜେକସନ ପ୍ୟାକେଟରେ ସ୍ୱତନ୍ତ୍ର ସୂଚନା ଦିଆଯାଇଥିବା ଲେଖା ଅଛି ।

ହାର୍ବୋମିନରାଲ ଔଷଧ ପେଟିକା—(Medicine Chest)

ପ୍ରତି ବାକ୍‌ସରେ ସୁନିର୍ବାଚିତ ଆଠଟି ଔଷଧ ସହିତ ପ୍ରତ୍ୟେକ ଔଷଧର ପ୍ରୟୋଗ ପ୍ରଣାଳୀ ଦିଆଯାଇଥାଏ । ଭାରତବର୍ଷର ଚଉଦଟି ଭାଷାରେ ବ୍ୟବହାର ବିଧି ଲେଖା-ଯାଇଛି । ଦେଶର ଗ୍ରାମାଞ୍ଚଳର ଲୋକମାନଙ୍କର ସେବା ସହଜରେ କରିବା ପାଇଁ ଏହି ଯୋଜନା କରାଯାଇଅଛି । କେତେକ ସରକାରୀ ତଥା ବେସରକାରୀ ଅନୁଷ୍ଠାନ ଲୋକଙ୍କୁ ଚିକିତ୍ସା ସାହାଯ୍ୟ ଦେବା ଉଦ୍ଦେଶ୍ୟରେ ଏହି ଔଷଧ ବାକ୍‌ସକୁ ବିଶେଷ ପସନ୍ଦ କରୁଅଛନ୍ତି । ବିଶେଷ ଚିକିତ୍ସା ବିଦ୍ୟା ଜାଣି ନ ଥିବା ଲୋକେ ମଧ୍ୟ ଏହି ବାକ୍‌ସଗୁଡ଼ିକକୁ ଗୃହ ଡିସ୍‌ପେନସରି ରୂପରେ ବ୍ୟବହାର କରିପାରନ୍ତି । ଏଥିପାଇଁ ଆମର ସ୍ୱତନ୍ତ୍ର ପୁସ୍ତିକା ପଢ଼ନ୍ତୁ ।

ନୂଆ ଓ ପୁରୁଣା ରୋଗରେ ଆମର ହାର୍ବୋ ମିନରାଲ ଔଷଧଗୁଡ଼ିକ ଶୀଘ୍ର କାମ ଦେଖାଇଥାଏ । ଥରେ ଏହି ଔଷଧ ଭଲ ଗୁଣ ଦେଖାଇଲେ, ତେଣିକି ସାଧାରଣ ମାତ୍ରାରେ ବ୍ୟବହାର କଲେ ଉନ୍ନତିର ଗତିକୁ ଅବ୍ୟାହତ ରଖିଥାଏ ଏବଂ ପ୍ରକୃତିକୁ ସାହାଯ୍ୟ କରିଥାଏ । ଉପଯୁକ୍ତ ମାତ୍ରାରେ ହାର୍ବୋ ମିନରାଲ ଔଷଧଗୁଡ଼ିକ ବ୍ୟବହାର କରାଗଲେ କୌଣସି ପ୍ରତିକ୍ରିୟା ଦେଖାଏ ନାହିଁ ।

ଏହି ଔଷଧଗୁଡ଼ିକର ମୂଲ୍ୟ ସର୍ବଦା କମ୍ ରଖାଯାଇଛି । ଦେଶର ଦରିଦ୍ର ଜନସାଧାରଣଙ୍କ ସେବା ଉଦ୍ଦେଶ୍ୟରେ ବ୍ରତୀ ହୋଇ ଦୀର୍ଘ ଷାଠିଏ ବର୍ଷ ହେଲା ଏହି ଔଷଧଗୁଡ଼ିକର ପ୍ରଚଳ ଆରମ୍ଭ କରାଯାଇଅଛି । ଔଷଧଗୁଡ଼ିକ ନିଶ୍ଚିତ ଫଳପ୍ରଦ ହେଉଥିବାରୁ ଏହି ଷଔଷଧଗୁଡ଼ିକର ଲୋକପ୍ରିୟତା କ୍ରମଶଃ ବୃଦ୍ଧି ପାଉଅଛି ।

## ହାର୍ବୋମିନରାଲ ଔଷଧର ପ୍ରୟୋଗ ବିଧି—

### ଅଗରକୋ—

### ନିଦ୍ରାକାରକ ଓ ଆକ୍ଷେପ ନାଶକ—

ଏହା ଶିଶୁମାନଙ୍କ ମୂର୍ଚ୍ଛା, ସ୍ତ୍ରୀଲୋକମାନଙ୍କର ହିଷ୍ଟିରିୟା ବା ମୃଗୀରୋଗ ଏବଂ ତତ୍‌ସଂକ୍ରାନ୍ତ ଅନ୍ୟାନ୍ୟ ଉପସର୍ଗ, ପୁରୁଷମାନଙ୍କଠାରେ ପ୍ରକାଶ ପାଉଥିବା ଅପସ୍ମାର ରୋଗରେ ଏହି ଔଷଧ ବିଶେଷ ଫଳପ୍ରଦ । ଏପିଲେପ୍‌ସି ବା ଅପସ୍ମାର ରୋଗରେ ଦିନବେଳେ ରୋଗୀକୁ ଭାଇଟାଲ ଏସେନ୍‌ସ ଓ ଶୋଇବା ପୂର୍ବରୁ ଅଗର କୋ ବ୍ୟବହାର କରାଯାଇଥାଏ । ମୃଗୀ ରୋଗରେ ମଧ୍ୟ ଏହି ବ୍ୟବସ୍ଥା କରାଯାଇଥାଏ । ରୋଗୀର ଆବଶ୍ୟକତାନୁଯାୟୀ ଔଷଧ ବ୍ୟବହାର କରିବାକୁ ହୋଇଥାଏ ।

ଅଳ୍ପ ମାତ୍ରାରେ ଆଗାରିକସ୍ ବ୍ୟବହାର କଲେ ମୂର୍ଚ୍ଛାରୋଗ ଛାଡ଼ି ଯାଇଥାଏ । ସ୍ନାୟୁମଣ୍ଡଳୀର ବିକ୍ଷେପ ଘଟୁଥିଲେ, ତାହା ସ୍ୱାଭାବିକ ଅବସ୍ଥାକୁ ଫେରିଆସେ । ମୃଗୀରୋଗ ସ୍ତ୍ରୀମାନଙ୍କୁ ଆକ୍ରମଣ କରିବା ସମୟରେ ତାର ପ୍ରଭାବ ଜରାୟୁ, ଡିମ୍ବବାହିକାରେ ପ୍ରତି-ଫଳିତ ହୋଇଥାଏ । ଏହିପରି ଅବସ୍ଥାରେ ଅଗରକୋର ବ୍ୟବହାର ବିଶେଷ ଉପକାରକ ହୋଇଥାଏ । ମାନସିକ ଉତ୍ତେଜନା, କ୍ଲାନ୍ତି, ଅବସନ୍ନତା ଓ ଭ୍ରମ ଅବସ୍ଥାରେ ଏଥୁସା ବ୍ୟବହାର କରାଯାଇପାରେ । ଏହାଦ୍ୱାରା ଉପରୋକ୍ତ ଲକ୍ଷଣଗୁଡ଼ିକ କମିଯିବା ସଙ୍ଗେ ସଙ୍ଗେ ସୁନିଦ୍ରା ହୁଏ ।

### ଉପାଦାନ—

| | ପ୍ରତିବଟିକା |
|---|---|
| ଟିଂଚର ଆଗାରିକସ | ୦.୦୦୬୪ ଏମ୍‌ଏଲ |
| ଟିଂଚର ଏଥୁସା | ୦.୦୦୬୪ ଏମ୍.ଏଲ୍. |
| ଟିଂଚର ଲିଲିୟମ | ୦.୦୧୩୨ ଏମ୍.ଏଲ୍. |

ପ୍ରୟୋଗ ସୂଚନା—

ଶିଶୁ ଓ ବାଳକମାନଙ୍କର ଆକ୍ଷେପ :—

ସ୍ତ୍ରୀମାନଙ୍କର ମୃଗୀରୋଗ, ବାଳକ ଓ ପୁରୁଷମାନଙ୍କଠାରେ ପ୍ରକାଶ ପାଉଥିବା ମୃଗୀରୋଗ ସଦୃଶ ଲକ୍ଷଣ ।

ଅପସ୍ମାର—

ସକାଳେ ଭାଇଟାଲ ଏସେନ୍ସ, ଅଗର କୋ ଶୋଇବା ସମୟରେ ପ୍ରଯୁଜ୍ୟ । ଆବଶ୍ୟକତା ଅନୁଯାୟୀ ଔଷଧ ବ୍ୟବହାର ଚାଲୁ ରଖିବାକୁ ହେବ ।

ଯେଉଁ ରୋଗୀମାନଙ୍କୁ ଏହି ରୋଗ ବାରମ୍ବାର ଆକ୍ରମଣ କରେ, ସେମାନଙ୍କ ପାଇଁ ମଧ୍ୟ ଉପରୋକ୍ତ ବ୍ୟବସ୍ଥା ଚାଲୁ ରଖିବାକୁ ହେବ ।

ମାତ୍ରା—ଶିଶୁମାନଙ୍କୁ ଗୋଟିଏ ବଟିକାର ½ର ଚୂର୍ଣ୍ଣ ମହୁ ବା ଦୁଧ ସହିତ ମିଶାଇ ଦେବାକୁ ହେବ ।

ପ୍ୟାକିଂ—ପ୍ରତି ଶିଶିରେ ପଚାଶଟି ବଟିକାଥାଏ ।

ଆଲବୋସାଙ୍ଗ—

ପୁଷ୍ଟିକାରକ ଯୋଗ—

ଶରୀର ପାଇଁ ଆବଶ୍ୟକ ହେଉଥିବା କେତେକ ଧାତବ ପଦାର୍ଥ, ପୁଷ୍ଟିକାରକ ଔଷଧ ଓ ପଥ୍ୟ ଭାବରେ ଆୟୁର୍ବେଦ ଚିକିତ୍ସାରେ ସପ୍ରଚଳିତ ବନୌଷଧିର ମିଶ୍ରଣରେ ପ୍ରସ୍ତୁତ । ଶାରୀରିକ ଜୀବକୋଷ ସମୂହର ପୁନର୍ଗଠନ, ପରିପାକଶକ୍ତି ଊଣାଥିବା ରୋଗୀମାନଙ୍କ ପାଇଁ ଏହା ବିଶେଷ ହିତକାରକ । ଏହା ଚୂର୍ଣ୍ଣ ଓ ବଟିକା ଆକାରରେ ମିଳେ ।

ଉପାଦାନ–

| ୧୦୦ ଗ୍ରାମ ପ୍ରତି | |
|---|---|
| କାଲ୍‌ସିଅମ୍ ଲ୍ୟାକ୍‌ଟେଟ (ଆଇ.ପି.) | –୫.୭୧ ଗ୍ରାଃ |
| କାଲସିୟମ୍ ଡାଇବେସିକ୍ ଫସଫେଟ୍ (ଆଇ.ପି.) | –୩.୪୩ ଗ୍ରାଃ |
| ଟ୍ରିବାସିକ୍ ମ୍ୟାଗ୍ନେସିୟମ୍ ଫସ୍‌ଫେଟ (ଏନ୍.ଏଫ୍-୫୫) | –୧.୧୪ ଗ୍ରାଃ |
| ଅଶ୍ୱଗନ୍ଧା ( Withania Sompnifera ) | –୮.୦୦ଗ୍ରାଃ |

ତମ୍ବା ଓ ଲୌହର ସତ୍ତା –

| ପ୍ରତି ବଟିକା | |
|---|---|
| କାଲସିଅମ୍ ଲ୍ୟାକଟେଟ (ଆଇ.ପି.) | –୫୪.୦ ମିଃଗ୍ରାଃ |
| କାଲସିଅମ ଡାଇବେସିକ୍ ଫସ୍‌ଫେଟ (ଆଇ.ପି.) | –୩୬.୦ ମିଃଗ୍ରାଃ |
| ଟ୍ରିବାସିକ ମ୍ୟାଗ୍ନେସିୟମ୍ ଫସ୍‌ଫେଟ (ଏନ୍.ଏଫ୍. ୫୫) | –୩.୬ ମିଃଗ୍ରାଃ |
| ଅଶ୍ୱଗନ୍ଧା | –୫୫.୦ ମିଃଗ୍ରାଃ |

ତମ୍ବା ଓ ଲୌହର ସତ୍ତା–

ପ୍ରୟୋଗ ସ୍ଥଳ–

ଯଥାର୍ଥ ପୁଷ୍ଟିକାରକ ଖାଦ୍ୟ ପାଉ ନ ଥିବା ଓ ଯେଉଁ ରୋଗୀମାନଙ୍କର ପରିପାକ ଶକ୍ତି ଦୁର୍ବଳ ସେମାନଙ୍କ ପକ୍ଷରେ ଏକାନ୍ତ ଉପଯୋଗୀ ।

ସାଧାରଣ ଦୁର୍ବଳତା–ଶାରୀରିକ ଓ ମାନସିକ ଶକ୍ତିର ଅଭାବ, ଦୁର୍ବଳତା, ଏକାଗ୍ରତା ଓ ସ୍ମରଣଶକ୍ତିର ଅଭାବ, ଅକାଳ ବାର୍ଦ୍ଧକ୍ୟ ଆକ୍ରମଣ ସ୍ଥଳରେ ପ୍ରଯୁଜ୍ୟ ।

ସ୍ତନ୍ୟପାୟୀ ଶିଶୁ–ଯେଉଁମାନେ ମାତୃସ୍ତନ୍ୟ ପାଉ ନାହାନ୍ତି, ଶିଶୁ ଖାଦ୍ୟ ଉପରେ ନିର୍ଭରଶୀଳ ସେମାନେ ଏହାକୁ ସଙ୍ଗ ଦୁଧ ସଙ୍ଗରେ ବ୍ୟବହାର କରି ପାରିବେ, ଏହା ହଜମଶକ୍ତି ବଢ଼ାଇଥାଏ ।

ବର୍ଦ୍ଧିଷ୍ଣୁ ଶିଶୁ—ଏହା ବର୍ଦ୍ଧିଷ୍ଣୁ ଶିଶୁମାନଙ୍କ ଅଭିବୃଦ୍ଧି ପାଇ ଆବଶ୍ୟକ ଧାତବ ପଦାର୍ଥ ଓ ଅନ୍ୟାନ୍ୟ ପୁଷ୍ଟିକାରକ ଉପାଦାନ ଯୋଗାଇଥାଏ । ଏହାଦ୍ୱାରା ପୁଷ୍ଟିହୀନତା ଦୂର କରିବା ସଙ୍ଗେ ସଙ୍ଗେ ଶିଶୁମାନଙ୍କର ପରିପାକ ଶକ୍ତି ବଢ଼ାଇଥାଏ ।

ସ୍ତନ୍ୟଦାୟିନୀ ମା—ଏହା ଗର୍ଭାବସ୍ଥା ଓ ସ୍ତନ୍ୟଦାନ ଅବସ୍ଥାରେ ଆବଶ୍ୟକ ହେଉଥିବା କାଲସିୟମ୍, ଫସଫରସ୍ ପ୍ରଭୃତି ଅନ୍ୟାନ୍ୟ ଧାତବ ପଦାର୍ଥ ଯୋଗାଇ ସ୍ତନ୍ୟଦାନ ଜନିତ ଶ୍ରାନ୍ତି ଦୂର କରିବା ସଙ୍ଗେ ସଙ୍ଗେ ମାତୃସ୍ତନ୍ୟ ବୃଦ୍ଧିରେ ସହାୟକ ହୋଇଥାଏ ।

ମାନସିକ ପରିଶ୍ରମ କରୁଥିବା ବ୍ୟକ୍ତି—ଯେଉଁମାନେ ଅତ୍ୟଧିକ ମାନସିକ ପରିଶ୍ରମ କରନ୍ତି, ତଦ୍‌ଜନିତ ଶ୍ରାନ୍ତି, କ୍ଳାନ୍ତି, ଗ୍ଳପ ଅନୁଭବ କରନ୍ତି ସେମାନଙ୍କ ପାଇଁ ବିଶେଷ ଉପଯୋଗୀ ।

ବୟୋବୃଦ୍ଧ—ବୟସ ବୃଦ୍ଧି ଜନିତ କ୍ଷୟ ଦୂର କରିବା ସଙ୍ଗେ ସଙ୍ଗେ ପୋଷଣ କାର୍ଯ୍ୟକୁ ସାହାଯ୍ୟ କରେ ।

ରୋଗ ଓ ରୋଗୋତ୍ତର ଅବସ୍ଥା—ଶରୀର ଯାନ୍ତ୍ରିକ କ୍ରିୟାକୁ କ୍ରିୟାଶୀଳ କରିବା । ରୋଗପର ଦୁର୍ବଳତାକୁ ଶୀଘ୍ର ଦୂର କରିବା ସଙ୍ଗେ ସଙ୍ଗେ ପରିପାକ ଶକ୍ତିକୁ ବଢ଼ାଇଥାଏ ।

ରକ୍ତହୀନତା—ଏହା ଚିକିତ୍ସାର ସହାୟକ ଭାବେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଶାରୀରିକ ଦୁର୍ବଳତା ଦୂର କରିବାରେ ସାହାଯ୍ୟ କରେ ଏବଂ କ୍ଷୁଧାବୃଦ୍ଧି କରେ ।

ମାତ୍ରା—

୧/୪ ଗ୍ରାମ ଦିନକୁ ଦୁଇଥର—ଶିଶୁମାନଙ୍କ ପାଇଁ (୩ ବର୍ଷ ମଧ୍ୟରେ)
ବାଲ୍ୟାବସ୍ଥା—୧/୨ ଗ୍ରାମ ଦିନକୁ ଦୁଇଥର (୩ ବର୍ଷରୁ ୧୨ ବର୍ଷ)
ପୂର୍ଣ୍ଣବୟସ୍କ—୧ ଗ୍ରାମ ଦିନକୁ ଦୁଇଥର ।
ପ୍ରତି ପ୍ୟାକେଟରେ ବ୍ୟବହାର ବିଧି ଦିଆଯାଇଛି ।

ପ୍ୟାକିଂ—

ପାଉଡ଼ର (ଚୂର୍ଣ୍ଣ) ୧୭୦ ଗ୍ରା: ୪୫୪ ଗ୍ରା: ଟିଣ,
ବଟିକା—୬୦ଟା ଏବଂ ୨୫୦ଟା,

ଆମିଗ୍ଲି ଆ–

ଧମନୀ ଶ୍ୱପ ଓ ହୃତ୍ ଶୂଳ ( Angina pectoris ) ରୋଗର ଫଳପ୍ରଦ—ଚିକିତ୍ସା ପାଇଁ ଉପଯୋଗୀ ଉପାଦାନରେ ପ୍ରସ୍ତୁତ ।

ଉପାଦାନ—

| | |
|---|---|
| ପ୍ରତି ବଟିକାରେ ଥାଏ | |
| ଟିଂଚର ଲିଲିଅମ Q | ୦.୦୦୦୪ ଏମ୍.ଏଲ. |
| ଗ୍ଲୋନୋନିଅମ ୩ X | ୧.୬ ମି:ଗ୍ରା: |
| ନେଟ୍ରମ୍ ନାଇଟ୍ରୋସମ୍ ୩ X | ୨୦୫ ମି:ଗ୍ରା: |

ପ୍ରୟୋଗ ସୂଚନା—

ଦ୍ରୁତଧମନୀବିସ୍ତାରଣ କାର୍ଯ୍ୟକରି ପାରୁଥିବା ହେତୁ ଏହା ହୃତ୍ଶୂଳ ଦୂର କରିବାରେ ଫଳପ୍ରଦ ହୋଇଥାଏ । ରକ୍ତାଶୟ ବିସ୍ତାରିତ କରିବାର ଗୁଣ ଏଥିରେ ନିହିତ ଥିବାରୁ ଉଚ୍ଚରକ୍ତଚାପ, ମୁଣ୍ଡ ବ୍ୟଥା ଯଥାଶୀଘ୍ର କମାଇବାରେ ଏହା ସହାୟକ ହୁଏ ।

ଯେଉଁ ସ୍ଥଳରେ ଫେନୋବାଲସିନ୍ କିମ୍ବା ଭାଇଟାଲ ଏସେନ୍ସ କାର୍ଯ୍ୟକରେ ନାହିଁ ସେଠାରେ ଆମିଗ୍ଲିଆ ଦେବା ଆବଶ୍ୟକ । ରଜକଷ୍ଟଜନିତ ଋତୁଶୂଳ, ଶ୍ୱାସ, ହୁପିକାସ, ଶିଶୁଅପସ୍ମାର, ବାନ୍ତିଭାବ ସହିତ ମୁଣ୍ଡବ୍ୟଥା ରୋଗରେ ଏହା ମଧ୍ୟ ବିଶେଷ ହିତକାରକ ।

ଅପସ୍ମାର ଆକ୍ରମଣ ସମୟରେ ଏଥିରୁ ଗୋଟିଏ ବଟିକା ଗୁଣ୍ଡକରି ଜିଭତଳେ ରଖି ଦେଲେ ମଧ୍ୟ ତାହା କାର୍ଯ୍ୟ କରେ ।

ମାତ୍ରା –

୨ ବଟିକା ଦିନକୁ ତିନିଥର ।

ପ୍ୟାକିଂ –

ଗୋଟିଏ ଶିଶିରେ ୫୦ଟି ବଟିକା ଥାଏ ।

ଆଉରାଟିନମ–

ଗର୍ଭାଶୟ ସ୍ଫୀତି ଜନିତ ବିକାର ।
ଜରାୟୁ ଓ ଡିମ୍ବାଶୟ ବିକାର ପାଇଁ ଫଳପ୍ରଦ ଉପାଦାନ ଦ୍ୱାରା ପ୍ରସ୍ତୁତ ।

ଉପାଦାନ–

୧ଟି ବଟିକାରେ ଥାଏ

| | |
|---|---|
| ଆଉରମ ମ୍ୟୁରିୟାଟିକମ୍ ୩ X | ୨୪ ମି: ଗ୍ରା: |
| ଟିଂଚର ପଲ୍‌ସେଟିଲା Q | ୦.୦୦୮ ଏମ୍. ଏଲ୍; |
| ଟିଂଚର ଥୁଜା Q | ୦.୦୦୨୪ ଏମ୍. ଏଲ୍ । |

ଔଷଧର ଗୁଣଧର୍ମ–

ସ୍ତ୍ରୀମାନଙ୍କ ଶ୍ରୋଣୀ ଗହ୍ୱରସ୍ଥ କ୍ରତୁ ( Organ ) ର ବିକାରରେ ବିଶେଷ ଫଳଦାୟକ । ଉଚ୍ଚରକ୍ତଚାପ ରୋଗରେ ଏହାର ମଧ୍ୟ ବିଶିଷ୍ଟ ଉପକାରିତା ଅଛି ।

ଟିଂଚର ପଲସେଟିଲା–ଯେଉଁ ରୋଗୀମାନେ ବିଶେଷ ଭାବପ୍ରବଣ ସେମାନଙ୍କଠାରେ ଏହା ବିଶେଷ ଉପକାର ଦେଖାଇଥାଏ । ସ୍ନାୟୁଗତ ପୀଡ଼ା ସାଧାରଣ ବିନ୍ଧାଛିଟିକା, ଋତୁରୋଧ ସ୍ଥଳରେ ପ୍ରୟୋଗ କରାଯାଇଥାଏ । ଏହା ଅନିୟମିତ ଋତୁସ୍ରାବକୁ ନିୟମିତ କରାଇଥାଏ ।

ଟିଂଚର ଥୁଜା–ଶ୍ୱେତ ପ୍ରଦର ବା ବିଭିନ୍ନ ରଙ୍ଗଯୁକ୍ତ ସ୍ରାବ, ରଜସ୍ୱଳତା, ରଜକୃଚ୍ଛ୍ରତା, ଡିମ୍ବାଶୟ ପ୍ରଦାହ ହେତୁ ବଂକ୍ଷଣଦେଶ (ଗିଲିଟି)ରେ ପୀଡ଼ା ସ୍ଥଳରେ ବିଶେଷ ଉପକାର ଦର୍ଶାଇଥାଏ ।

ପ୍ରୟୋଗ ସୂଚନା–

ଜରାୟୁ, ଡିମ୍ବାଶୟପ୍ରଦାହ, ତଦ୍‌ଜନିତ ଋତୁବିକାର ସ୍ଥଳରେ ପ୍ରଯୁଜ୍ୟ ।

ଗର୍ଭାଶୟ ଗ୍ରୀବାକ୍ଷତ, ଶ୍ୱେତପ୍ରଦର, ସ୍ୱଳ୍ପ ଓ ଅନିୟମିତ ଋତୁସ୍ରାବ କ୍ଷେତ୍ରରେ ପ୍ରୟୋଗ କରାଯାଇଥାଏ ।

ଏହି ଔଷଧ ବିଶେଷ ଭାବପ୍ରବଣ ସ୍ତ୍ରୀଲୋକ, ଯେଉଁମାନଙ୍କର ଋତୁସ୍ରାବ ସମୟରେ ବେଦନା, ବିଶେଷ ଝାଳବହିବା, ଦେହ ଥଣ୍ଡା ଲଗିଯିବା ପ୍ରଭୃତି ଦେଖାଯାଏ ସେମାନଙ୍କ ପକ୍ଷରେ ବିଶେଷ ଉପକାରୀ ।

ମାତ୍ରା–

½ ରୁ ୧ଟି ବଟିକା ଦିନକୁ ତିନିଥର ବିଶେଷତଃ ଖାଇବା ଓ ଶୋଇବାର ଅଧଘଣ୍ଟା ପୂର୍ବରୁ ସେବ୍ୟ ।

ପ୍ୟାକିଂ–

ଦଶଟି ବଟିକା ଥିବା ଦଶଟି ଷ୍ଟ୍ରିପ୍ ।

ବେଙ୍ଗୋମୋନସ୍–

ଶ୍ୱାସନଳୀ ସଂକ୍ରାନ୍ତ ଶ୍ୱାସ ରୋଗର ଇଞ୍ଜେକ୍‌ସନ ।

ଶ୍ୱାସନଳୀର ବିସ୍ତାରକ, କଫନିଃସାରକ, ଶାମକ ଉପାଦାନରେ ଏହା ପ୍ରସ୍ତୁତ । ଶ୍ୱାସନିକାଜ ଶ୍ୱାସ ରୋଗରେ ଏହା ଆଶୁ ଫଳ ଦେଖାଇଥାଏ ।

ଉପାଦାନ–

ପ୍ରତି ଏ. ଏଲ୍.ରେ ଥାଏ

| | |
|---|---|
| ବାସଙ୍ଗ (Adhatoda Vasica ) | ୦.୦୧ ମି.ଗ୍ରା. |
| ଧାତୁରା ( Datura metel ) | ୦.୦୨ ମି.ଗ୍ରା. |

| | | |
|---|---|---|
| ·ଅଶ୍ୱଗନ୍ଧା ( withania somnifera ) | ୦.୦୨ ମି.ଗ୍ରା. | |
| ଏଫିଡ୍ରିନ ହାଇଡ୍ରୋକ୍ଲୋରାଇଡ୍ ଆଇ.ପି. | ୮ ମି.ଗ୍ରା. | |
| preseravative Chlorobutol I.P | ୦.୫ % | |

ଔଷଧର ଗୁଣଧର୍ମ–

ଏଫିଡ୍ରିନ୍ ଯଥାଶୀଘ୍ର ଶ୍ୱସନିକାର ସଂକୋଚନତାକୁ ଦର କରିବା ସଙ୍ଗେ ସଙ୍ଗେ ଶ୍ୱାସ କଷ୍ଟକୁ କମାଇଦିଏ ।

ବାସଙ୍ଗ–ଏହା କଫ ନିଃସାରକ ଏବଂ ଛାତି ଭିତରେ ଯେ କୌଣସି ଜୀବାଣୁ ପଶିଥିଲେ, ତାହା ନାଶକରେ ।

ଅଶ୍ୱଗନ୍ଧା ଓ ଧୁତୁରା ଶୁଖିଲା କାସ ଦୂର କରିବା ସଙ୍ଗେ ସଙ୍ଗେ ଶ୍ୱାସକଷ୍ଟ ଦୂର କରି, ଏକ ଉପଶମକାରକ କାର୍ଯ୍ୟକରେ ।

ପ୍ରୟୋଗ ସୂଚନା–

ଶ୍ୱସନିକାଗତ ଶ୍ୱାସରୋଗ (ବ୍ରଙ୍କିଆଲ ଆଜ୍ମା)

ମାତ୍ରା–

ଚର୍ମତଳେ ଇଞ୍ଜେକ୍ସନ ଦେବାକୁ ହୁଏ । ½ ଏମ୍. ଏଲ୍. ପିଲାଙ୍କ ପାଇଁ, ୧ ଏମ୍. ଏଲ. ବୟସ୍କଙ୍କପାଇଁ ଯଦି ଆବଶ୍ୟକ ପଡ଼େ ଚବିଶ ଘଣ୍ଟା ପରେ ପୁଣି ଥରେ ଦିଆଯାଇପାରେ । ମଝିରେ ମଝିରେ ଡେସମା ବ୍ୟବହାର କଲେ ବାରମ୍ବାର ଇଞ୍ଜେକ-ସନ ଦେବା ଦରକାର ପଡ଼େ ନାହିଁ ।

ପ୍ୟାକିଂ–୧୦×୧ ଏମ୍. ଏଲ୍: ଆମ୍ପୁଲ ବାକ୍ସ ।

ବାଇଓସଲ –

ଗ୍ରାଇପ୍ ୱାଟର–ପିଲା ତଥା ବଡ଼ ମଣିଷଙ୍କର ପରିପାକ ପ୍ରକ୍ରିୟା ଜନିତ ଯେ କୌଣସି ବିକାର ଅବସ୍ଥାରେ ଦିଆଯାଇପାରେ । ଜନସାଧାରଣଙ୍କ ପାଇଁ ଏହା ଏକ ଘରକରଣା ଔଷଧ ।

ଉପାଦାନ–

ପ୍ରତି ୫. ଏମ୍. ଏଲ (ପ୍ରାୟ ଗ୍ରହାଗ୍ରମଚ)ରେ ଥାଏ–

| | |
|---|---|
| ଅଏଇ ଏନିଥି ଆଇ. ପି. | ୦.୦୦୦୬୧୫ ଏମ୍. ଏଲ. |
| ଅଏଲ କାରି ବି. ପି. ସି. | ୦.୦୦୦୬୧୫ ଏମ୍. ଏଲ. |
| ସୋଡ଼ିଅମ୍ ବାଇକାରବୋନେଟ. ଆଇ. ପି. | ୬୧.୫ ମି. ଗ୍ରା. |

ଆଲକହଲ ୪.୬ V V ସ୍ୱାଦିଷ୍ଟ ସିରପ୍ ସହ ।

ପ୍ରୟୋଗ ସୂଚନା–

ଭୋକ ନ ହେବା, ଅମ୍ଳ, ଶୂଳ ବେଦନା, ପେଟଫାମ୍ପିବା, ପତଳା ଝାଡ଼ାହେବା ପ୍ରଭୃତି ପରିପାକ ପ୍ରକ୍ରିୟା ସମ୍ବନ୍ଧୀୟ ଯାବତୀୟ ଅବସ୍ଥାରେ ପ୍ରଯୁଜ୍ୟ ।

ପିଲମାନଙ୍କର ଦାନ୍ତଉଠିକା ସମୟରେ ଦେଖାଯାଉଥିବା ପତଳାଝାଡ଼ା ପେଟଫାମ୍ପିବା ଅବସାଦ, ରୋଗ-ପର ଅବସ୍ଥାର ପରିପାକ ପ୍ରକ୍ରିୟାର ବିକାର ଦୂର କରିବାରେ ସାହାଯ୍ୟ କରିଥାଏ ।

ନିୟମିତ ଭାବରେ ସକାଳେ ଓ ସନ୍ଧ୍ୟାରେ ବ୍ୟବହାର କଲେ କ୍ଷୁଧା ବୃଦ୍ଧିକରେ; ପରିପାକ କ୍ରିୟାକୁ ସାହାଯ୍ୟ କରେ । ପତଳାଝାଡ଼ା ହେବାକୁ ପ୍ରତିଷେଧ କରେ ।

ଏହାକୁ ନିର୍ବିଘ୍ନ ଭାବରେ ରୋଗାବସ୍ଥା, ଆରୋଗ୍ୟାବସ୍ଥାରେ ଦିଆଯାଇ-ପାରେ । ଏହା ନିଶ୍ଚିତ ଭାବରେ କ୍ଷୁଧା ବୃଦ୍ଧିକରେ । ପରିପାକ କ୍ରିୟାକୁ ଶୃଂଖଳିତ କରେ ।

ମାତ୍ରା–

ନବଜାତ ଶିଶୁ– $\frac{1}{8}$ ଗ୍ରମଚ ଦିନକୁ ଦୁଇଥର
୧ ମାସ ୬–ମାସ ଶିଶୁ $\frac{1}{2}$ ଗ୍ରମଚ ଦିନକୁ ଦୁଇଥର
୬ ମାସ ୧–ବର୍ଷ ୧ ଗ୍ରମଚ ଦିନକୁ ଦୁଇଥର
ଏକ ବର୍ଷରୁ ଉର୍ଦ୍ଧ୍ୱ ୧–୨ ଗ୍ରମଚ ଦିନକୁ ଦୁଇଥର

ପ୍ୟାକିଂ–

୧୧୩ ଏମ୍. ଏଲ. ଶିଶି

ବ୍ରହ୍ମଡ଼ାଇନ୍–

ଜରାୟୁ ପୁଷ୍ଟିକାରକ ବଟିକା

ଶହ ଶହ ବର୍ଷଧରି ଜରାୟୁର ପୁଷ୍ଟିକାରକ ଔଷଧ ଭାବରେ ଆୟୁର୍ବେଦ ଚିକିତ୍ସାରେ ପ୍ରଚଳିତ ନିମ୍ନଲିଖିତ ଦ୍ରବ୍ୟର ମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ–

ପ୍ରତ୍ୟେକ ବଟିକାରେ ଥାଏ

| | |
|---|---|
| ଲୋଧ ( Sympolocos racemosa) | ୫୨ ମି. ଗ୍ରା. |
| ଅଶୋକ ( Saraca indica ) | ୫୨ ମି. ଗ୍ରା. |
| ଅଶ୍ୱଗନ୍ଧା ( withania sommifera ) | ୨୮ ମି. ଗ୍ରା. |
| ବାଳତଗର ( Valeriana wallich ) | ୨୮ ମି. ଗ୍ରା. |
| କଣ୍ଟାକୁସୁମ ( Agremone mexican ) | ୨ ମି. ଗ୍ରା. |

ଔଷଧର ଗୁଣ ଧର୍ମ–

ଲୋଧ ଜରାୟୁ ତନ୍ତୁମାନଙ୍କର ଶିଥିଳତା ପ୍ରଦାନକରେ । ଏଣୁ ଏହା ଜରାୟୁ ପୀଡ଼ା ଦୂରକରେ । ଋତୁର ଅତିସ୍ରାବ, ସ୍ରାବହୀନତା, ଶ୍ୱେତପ୍ରଦର ପ୍ରଭୃତି ଉପସର୍ଗ ଦୂରକରି ଜରାୟୁର କାର୍ଯ୍ୟକୁ ନିୟମିତ କରିବାରେ ସାହାଯ୍ୟ କରେ ।

ଅଶୋକ, ଏହା ଜରାୟୁ ସ୍ରାବର ରୋଧକ । ଏକ ଶାମକ ଏବଂ ନିୟନ୍ତ୍ରକ ଦ୍ରବ୍ୟ ଭାବରେ ପରିଚିତ । ଲୋଧ ଓ ଅଶୋକର ମିଶ୍ରଣ ଶ୍ୱେତପ୍ରଦର ତଥା ଯାବତୀୟ ଋତୁ ବିକାର ସ୍ଥଳରେ ବିଶେଷ ଫଳପ୍ରଦ ହୋଇଥାଏ ।

ଅଶ୍ୱଗନ୍ଧା, ବାଳତଗର ଏବଂ କଣ୍ଟାକୁସମ ମାନସିକ ଚଞ୍ଚଳତା ଦୂରକରି ମାନସିକ ଶକ୍ତିକୁ ଦୃଢ଼କରେ । ଅଶ୍ୱଗନ୍ଧା ଶାରୀରିକ ଦୁର୍ବଳତା ଦର କରିବାରେ ଏକ ପ୍ରମାଣିତ ଦ୍ରବ୍ୟ । ବାଳତଗର, ଏହା ବିଶେଷ ସ୍ନାୟୁପୋଷ୍ୟ ଭାବରେ କାମକରେ: ତଳିପେଟର ଯାବତୀୟ ପୀଡ଼ା ଦୂରକରେ । କଣ୍ଟାକୁସୁମ ସଙ୍ଗେ ଏହାର ମିଶ୍ରଣ ବିଶେଷ ଫଳଦାୟକ ହୋଇଥାଏ ।

ପ୍ରୟୋଗ ସୂଚନା–

ଅତ୍ୟଧିକ ରକ୍ତସ୍ରାବ, ଶ୍ୱେତପ୍ରଦର ଜନିତ ସ୍ରାବ, ଋତୁଚକ୍ରର ବ୍ୟତିକ୍ରମ ସ୍ଥଳରେ ବିଶେଷ ଫଳପ୍ରଦ ।

ଯଦି ସ୍ରାବ ଅତ୍ୟଧିକ ହେଉଥାଏ, ସେ ସ୍ଥଳରେ (ବିନିୟମ୍‌କୋ) ସଙ୍ଗରେ ମିଶାଇ ବ୍ୟବହାର କଲେ ଉତ୍ତମ ଫଳମିଳେ ।

ମାତ୍ରା–

୧ରୁ ଦୁଇଟି ବଟିକା ସକାଳ ଓ ସନ୍ଧ୍ୟାରେ

ପ୍ୟାକିଂ–

ଦଶଟି ବଟିକା ଥିବା ଦଶଟି ଷ୍ଟ୍ରିପ୍‌ର ବାକ୍‌ସ ।

ଡେସଲ–

ବାହ୍ୟ ପ୍ରୟୋଗ ପାଇଁ ମଲମ
ପେଶୀଗତ ବେଦନା, ଛାତିରେ କଫ ଜମିବା, ଶ୍ୱସନିକା ପ୍ରଦାହ ରୋଗରେ ପ୍ରଯୁଜ୍ୟ ।

ଉପାଦାନ–

ପ୍ରତି ଶହେ ଗ୍ରାମରେ

| | |
|---|---|
| ରତି ( Abrus precatorious ) | ୭.୫ ଗ୍ରା. |
| ସୁପେଦ୍ରାଇ ( Brassica campestris ) | ୫.୦ ଗ୍ରା. |
| ନାଲି ମରିଚ ( Capsicumannum ) | ୧୦.୦ ଗ୍ରା. |
| ଘିକୁଆଁରି ( Aloe barbadensis ) | ୫.୦ ଗ୍ରା. |

ଏହିସବୁ ବନସ୍ପତିର ନିର୍ଯାସ, ଆମବାତ, ଅଚଳସନ୍ଧି, ଶ୍ୱସନିକା ପ୍ରଦାହ, ଛାତିରେ କଫ ଜମିବା, ମୁଣ୍ଡବିନ୍ଧିବା ଦୂର କରିବାରେ ବିଶେଷ ଫଳପ୍ରଦ । ମାଂସପେଶୀର ଦୁର୍ବଳତା ଆଂଶିକ ପକ୍ଷାଘାତ ଅବସ୍ଥାରେ ମଧ୍ୟ ହିତକର ।

ପ୍ରୟୋଗ ବିଧି—

ଯେଉଁ ସ୍ଥାନରେ ବେଦନା ଅଛି ବା ଅଚଳତା ସୃଷ୍ଟି ହେଉଛି, ସେ ସ୍ଥଳରେ ଏହାକୁ ଧୀରେ ଧୀରେ ମାଲିସ କରିବାକୁ ହେବ । ଶ୍ୱସନିକା ପ୍ରଦାହରେ ଏହାକୁ ଛାତିରେ ଧୀରେ ଧୀରେ ଘଷିବାକୁ ପଡ଼େ । ଶିଶୁମାନଙ୍କର କୋମଳ ଚର୍ମ ଉପରେ ଏହାକୁ ବ୍ୟବହାର କଲାବେଳେ, ତହିଁରେ ସାମାନ୍ୟ ପରିମାଣରେ ଖାଇବା ତେଲ ମିଶାଇ ବ୍ୟବହାର କରିବାକୁ ପଡ଼େ ।

ପ୍ୟାକିଂ—

୩୨ ଏମ୍. ଏଲ. ଶିଶି
୧୨୫ ଏମ୍. ଏଲ. ଶିଶି

ଚିନି ଅମ୍‌କୋ—

ରକ୍ତରୋଧକ ବଟିକା

କେତେକ ଫଳପ୍ରଦ ଆୟୁର୍ବେଦୀୟ ବନସ୍ପତି ସଂଯୋଗରେ ଏହି ରକ୍ତରୋଧକ ଯୋଗଟି ପ୍ରସ୍ତୁତ ।

ଉପାଦାନ—

ପ୍ରତ୍ୟେକ ବଟିକାରେ ଥାଏ

ଡାଳଚିନି ( Cinnamomum zeylanicum ) ୧୨ ମି. ଗ୍ରା.
ମଇନାଫଳ ( Randia dumetroum ) ୩ ମି. ଗ୍ରା.
ରେଓଚିନି ( Rheum webianum ) ୪୪ ମି. ଗ୍ରା.
କଳାକଟୁକୀ ( Halleborus niger ) ୨୪ ମି. ଗ୍ରା.
ବବୁନଫୁଲ ( Matricariachamomilla ) ୪୬ ମି. ଗ୍ରା.

ଔଷଧ ଗୁଣଧର୍ମ—

ଡାଲଚିନି, ଏହା ଅନ୍ତର ବାୟୁନାଶ କରିବା ସଙ୍ଗେ ସଙ୍ଗେ ପାକସ୍ଥଳୀର ହିତଂକାରକ, ଧାରକ ତଥା ଉତ୍ତମ ରକ୍ତରୋଧକ । ଏହା ଜରାୟୁ ପେଶୀଗୁଡ଼ିକକୁ ଉତ୍ତେଜିତ କରେ; ଦୋଷଦୁଷ୍ଟ ଜରାୟୁର ସଂକୋଚନକୁ ସରଳ କରେ ।

ମଇନାଫଳ ମୃଦୁ ବିରେଚକ, ଗର୍ଭାଶୟ ଉତ୍ତାରକ ଏବଂ ତିକ୍ତରସ ବିଶିଷ୍ଟ ପୁଷ୍ଟିକାରକ ଦ୍ରବ୍ୟ ।

କଳାକଟ୍କୀ—ଏହା ଋତୁରୋଧନାଶକ ଏବଂ ଆର୍ତ୍ତବଜନକ ।

ବବୁନଫୁଲ—ଏହା ମୂତ୍ରକାରକ, ଉତ୍ତେଜକ, ଅନ୍ତ୍ରମଣ୍ଡଳୀରୁ ବାୟୁ ଦୂରକରି ପିତ୍ତର ନିଃସାରଣ କ୍ରିୟାକୁ ନିୟମିତ କରେ । ଏହା ମୁଖ୍ୟତଃ, ସ୍ୱଳ୍ପ ଆର୍ତ୍ତବ ବା ଆର୍ତ୍ତବାଧିକ ସ୍ଥଳରେ ବିଶେଷ କାର୍ଯ୍ୟକରେ । ଗୋଡ଼ର ସ୍ତବ୍ଧତା ଉଦରଶୂଳ ଏବଂ କାମଳ ରୋଗ ଦୂରକରେ ।

ପ୍ରୟୋଗ ସୂଚନା—

ଜରାୟୁ, ଅନ୍ତ୍ର, ଫୁସଫୁସ ପ୍ରଭୃତି ସ୍ଥାନର ରକ୍ତସ୍ରାବ, ମଳଦ୍ୱାର, ମୂତ୍ରଦ୍ୱାର, ପାଟି ବା ନାକବାଟେ ପ୍ରଚୁର ଭାବରେ ଯାଉଥିବା ସ୍ଥଳରେ ଏହା ବିଶେଷ ପ୍ରଯୁଜ୍ୟ ।

ବିଶେଷତଃ ସ୍ତ୍ରୀମାନଙ୍କର ଜରାୟୁ, ଡିମ୍ବାଶୟ, ଡିମ୍ବବାହିକାର ବିକୃତି ଯୋଗୁଁ ବିଶେଷ ଯନ୍ତ୍ରଣା ସମୟରେ ଏହା ଆଶୁ ଫଳପ୍ରଦ ।

ମାତ୍ରା—

ଶିଶୁ ½ ରୁ ୧ ବଟିକା ଦିନକୁ ତିନିଥର

ବୟସ୍କ ୧ରୁ ୨, ବଟିକ । ଦିନକୁ ତିନିଥର

ପ୍ୟାକିଂ—

ପ୍ରତି ଷ୍ଟ୍ରିପ୍‌ରେ ଦଶଟି ବଟିକା ଥାଏ

ଡାନଜିନ୍—

କଫ ନିଃସାରକ

କଫ ନିଃସାରକ ଭାବରେ ପରିଚିତ ବିଶିଷ୍ଟ ଦ୍ରବ୍ୟ ସଂଯୋଗରେ ପ୍ରସ୍ତୁତ ।

ଉପାଦାନ—

ପ୍ରତି ବଟିକାରେ ଥାଏ

| | |
|---|---|
| ଫିଟକିରି | ୧୪ ମି. ଗ୍ରା. |
| ବାସଙ୍ଗ ( Adhatoda vasica ) | ୩୦ ମି. ଗ୍ରା. |
| ନଳ ( (Labelia nicotianaefolia ) | ୩୦ ମି. ଗ୍ରା. |
| ଦୁଧି ( Euphorbiapilulifera ) | ୪୯ ମି. ଗ୍ରା. |

ଔଷଧର ଗୁଣ ଧର୍ମ—

ଫିଟିକିରି, ରୋଧକ, ସ୍ତବ୍ଧତାନାଶକ, ପୂୟରୋଧକ, ଶ୍ୱାସନଳୀର ଶାମକ । ବାସଙ୍ଗ ନୂତନ ତଥା ପୁରାତନ ଶ୍ୱସନିକା ପ୍ରଦାହ ଅବସ୍ଥାର କଫ ନିଃସାରକ । କଫକୁ ତରଳ କରିବାରେ ଏହାର ଗୁଣ ଅବିସମ୍ବାଦିତ ।

ନଳ, ଏହା ସ୍ତବ୍ଧତା ନାଶକ, କଫ ନିଃସାରକ, ଶ୍ୱସନିକା ପ୍ରଦାହର ଆକ୍ରମଣ ସମୟରେ ଏହା ବିଶେଷ ପ୍ରଯୁଜ୍ୟ ।

ବୃଦ୍ଧି, କଫ ଉତ୍ପାଦନ ସ୍ଥଳରେ ଅବସାଦକ କ୍ରିୟା ଦେଖାଏ । ଶିଶୁମାନଙ୍କର କଫ ରୋଗରେ ଏହା ବିଶେଷ ଉପକାରକ ।

**ପ୍ରୟୋଗ ସୂଚନା—**

ଶୁଖିଲା କଫ ବିଶେଷତଃ ହୁପିଂକଫ ରୋଗରେ ବିଶେଷ ହିତକର ।

**ମାତ୍ରା—**

୧/୮, ରୁ ୧/୬ ବଟିକା ଶିଶୁମାନଙ୍କୁ ଘରିଘଣ୍ଟା ଅନ୍ତରରେ ଦେବାକୁ ହୁଏ । ଅତି ଛୋଟ ପିଲାମାନଙ୍କୁ ଦେବାସ୍ଥଳରେ ଏହି ବଟିକାକୁ ଚୂର୍ଣ୍ଣକରି ମହୁରେ ମିଶାଇ ଦେବା ଆବଶ୍ୟକ ।

ରୋଗର ପ୍ରବଳ ଆକ୍ରମଣ ଅବସ୍ଥାରେ ପ୍ରତି ଦୁଇଘଣ୍ଟା ଅନ୍ତରରେ ଏହାକୁ ଦେବାକୁ ହୁଏ । ଶିଶୁର କୃମିଥିବାର ସନ୍ଦେହ କଲେ ପିପାରିଡ଼ ଦେବା ବିଧେୟ ।

ଏହି ଅବସ୍ଥାରେ ରୋଗୀର ରୋଗ ରୋଧକ ଶକ୍ତି ଉତ୍ପାଦନ ପାଇଁ ଦୁଧ ସହିତ ଆଲବୋସାଙ୍ଗ ଦୁଇଥର ଦେବା ବିଧେୟ ।

**ପ୍ୟାକିଂ—**

ଦଶଟି ବଟିକା ଷ୍ଟ୍ରିପର ମିଳେ ।

**ଡେସିଲ—**

ବେଦନାହାରକ ଓ ଜ୍ୱରଘ୍ନ ଔଷଧ ।

କେଫିନ୍ ସହିତ ଦୁଇଟି ସୁପରିଚିତ ବେଦନାହାରକ ଦ୍ରବ୍ୟର ମିଶ୍ରଣରେ ଏହା ପ୍ରସ୍ତୁତ ।

**ଉପାଦାନ—**

ପ୍ରତି ବଟିକାରେ ଥାଏ

| | | |
|---|---|---|
| ଏସିଟଲସାଲିସାଇଲିକ | ଆଇ. ପି. | ୨୨୫ ମି. ଗ୍ରା. |
| ପାରାସେଟାମଲ | ବି. ପି. | ୧୨୫ ମି. ଗ୍ରା. |
| କେଫିନ | ୟୁ. ଏସ. ପି. | ୩୦ ମି. ଗ୍ରା. |

**ଔଷଧୀୟ ଗୁଣଧର୍ମ—**

ଏସିଟଲ ସାଲିସାଇଲିକ ଏସିଡ଼ ଜ୍ୱର ଓ ବେଦନାହାରକ ଭାବେ ସୁପରିଚିତ । ଏହା ବ୍ୟତୀତ ବାହ୍ୟ ଓ ଆଭ୍ୟନ୍ତର ଫୁଲା କମାଇବାପାଇଁ ଏହା ଏକ ପ୍ରଭାବଶାଳୀ ଦ୍ରବ୍ୟ । ଏଣୁ ଆମବାତ ରୋଗ, ଫୁଲା ଓ ଦରଜ ସ୍ଥଳରେ ବିଶେଷ କାମଦିଏ । ପାରାସେଟାମଲ, ଏସିଟଲ ସାଲିସାଲିକ୍ ପରି ଏହା ଜ୍ୱର ଓ ବେଦନାହାରକ କେଫିନର ଉତ୍ତେଜକ ଗୁଣଥିବା ହେତୁ ସ୍ନାୟୁ କେନ୍ଦ୍ରରେ ଉତ୍ତେଜନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ମନରେ ପ୍ରସନ୍ନତା ଜନ୍ମାଇଥାଏ ।

ବେଦନାହାରକ କୌଣସି ଦ୍ରବ୍ୟକୁ ଉଚ୍ଚ ମାତ୍ରାରେ ପ୍ରୟୋଗ କରିବାଦ୍ୱାରା ଯେଉଁ ସବୁ ଉପସର୍ଗ ଦେଖାଯିବାର ସମ୍ଭାବନା ଥାଏ, କେଫିନସହ ଗୋଟିଏ ବା ଦୁଇଟି

ବା ତତୋଽଧିକ ବେଦନାହାରକ ଦ୍ରବ୍ୟର ମିଶ୍ରଣରେ ଆଶୁ ଫଳ ମିଳେ ଏବଂ ଔଷଧର କୌଣସି ପ୍ରତିକ୍ରିୟା ଦେଖାଯାଏ ନାହିଁ ।

ପ୍ରୟୋଗ ସୂଚନା—

ମୁଣ୍ଡବିନ୍ଧା, ଅଧକପାଳି, ଦନ୍ତଶୂଳ, ଋତୁଶୂଳ, ପେଶୀପୀଡ଼ା, ଆମବାତ ସ୍ନାୟୁଜନିତ ପୀଡ଼ାରେ ବିଶେଷ ପ୍ରଯୁଜ୍ୟ ।

ସର୍ଦ୍ଦିଜ୍ୱର, ଇନ୍‌ଫ୍ଲୁଏଞ୍ଜା ପ୍ରଭୃତି ଅବସ୍ଥାରେ ଜ୍ୱରର ଉତାପ କମାଇବାକୁ ଏହା ଦିଆଯାଇଥାଏ ।

ମାତ୍ରା —

ଆବଶ୍ୟକ ସ୍ଥଳରେ ବୟସ୍କମାନଙ୍କୁ ୧-୨ଟି ବଟିକା ଚାରିଘଣ୍ଟା ଅନ୍ତରରେ ଦିଆଯାଇପାରେ ।

ପାଞ୍ଚ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ଶିଶୁମାନଙ୍କୁ ୧/୨ ରୁ ୧ଟି ବଟିକା ଚାରିଘଣ୍ଟା ଅନ୍ତରରେ ଦିଆଯାଇପାରେ ।

ତିନିବର୍ଷରୁ ପାଞ୍ଚବର୍ଷର ଶିଶୁମାନଙ୍କୁ ୧/୪ ରୁ ୧/୨ ବଟିକା ଚାରିଘଣ୍ଟା ଅନ୍ତରରେ ଦେବାକୁ ହେବ ।

ପ୍ୟାକିଂ—

ଗୋଟିଏ ଷ୍ଟ୍ରିପ୍‌ରେ ଦଶଟି ବଟିକା ଥାଏ ।
ଗୋଟିଏ ଟିଣରେ ପାଞ୍ଚଶହ ବଟିକା ଥାଏ ।

ଡେସମା—

ଶ୍ୱାସ ରୋଧକ ବଟିକା

ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ କେତେକ ଶ୍ୱାସରୋଧକ ଦ୍ରବ୍ୟ ମିଶ୍ରଣରେ ଏହା ପ୍ରସ୍ତୁତ । କଫ ନିଃସାରଣ କ୍ଷେତ୍ରରେ ବିଶେଷ ପ୍ରଯୁଜ୍ୟ ।

ଉପାଦାନ—

ପ୍ରତି ବଟିକାରେ ଥାଏ

| | |
|---|---|
| ହୁମା ( Ephedra gerardiana ) | ୧୩୦ ମି. ଗ୍ରା. |
| ବାସଙ୍ଗ ( Adhatoda vasica ) | ୪୦ ମି. ଗ୍ରା. |
| ମେରାଙ୍କୁ ( Polygala chinesis ) | ୬୦ ମି. ଗ୍ରା. |
| ନଳ ( Lobelia nicotiaenaplia ) | ୨୫ ମି. ଗ୍ରା. |
| ଦୁଧି ( Fhphorbia pilulifera ) | ୪୦ ମି. ଗ୍ରା. |

ଔଷଧୀୟ ଗୁଣଧର୍ମ—

ହୁମା ଶ୍ୱାସନଳୀର ପେଶୀଗୁଡ଼ିକୁ ସରଳ କରିଦେବା ସଙ୍ଗେ ସଙ୍ଗେ ଶ୍ୱାସ

ପୁନଃ ପୁନଃ ଆକ୍ରମଣକୁ ପ୍ରତିରୋଧ କରେ । ଏଥିରେ ଏଫିଡ୍ରିନ ଆଲକଲଇଡ୍ ଥିବାରୁ ଶ୍ୱାସ କଷ୍ଟ ଦୂର କରିବାରେ ବିଶେଷ ସହାୟକ ହୁଏ । ବାସଙ୍ଗ ଶ୍ୱାସ କାସ ରୋଗରେ ସୁପରିଚିତ ଫଳପ୍ରଦ ଔଷଧ । ଏହା ଶ୍ୱାସ ନଳିକା ମଧ୍ୟରେ ଜମୁଥିବା କଫକୁ ସରଳ କରିଦିଏ । ମେରାଡ଼ୁ କଫ ନିଃସାରକ ଭାବରେ ପରିଚିତ । ଏହା କଫର ଉତ୍ପାଦନ କେନ୍ଦ୍ରକୁ ଉତ୍ତେଜିତ କରିବା ଫଳରେ କଫ ସରଳ ହୋଇ ବାହାରିଯାଏ ।

ନଳି—ଏହା ସ୍ତବ୍ଧତା ନାଶକ, ଶ୍ୱାସରୋଧକ ଏବଂ ନିଃସାରକ ଭାବରେ କାର୍ଯ୍ୟ କରିଥାଏ ।

ଦୁଧି ଶ୍ୱାସନଳୀର କଫ କେନ୍ଦ୍ରର ଉତ୍ତେଜନା ପ୍ରଶମିତ କରେ ଏବଂ ସରଳ କରି ବାହାର କରିଦେବାରେ ସାହାଯ୍ୟକରେ । ଶିଶୁମାନଙ୍କ ପକ୍ଷରେ ଏହା ବିଶେଷ ହିତକର ।

ପ୍ରୟୋଗ ସୂଚନା—

(୧) ଏହା ଶ୍ୱାସ ଆକ୍ରମଣକୁ ପ୍ରତିରୋଧ କରେ । (୨) ଶ୍ୱାସ ଚିକିତ୍ସାରେ ସହାୟକ ହୁଏ (୩) ପୁରୁଣା କଫ କାସ ରୋଗ (୪) ଶ୍ୱାସନୀଳୀରେ କୌଣସି ସଂକ୍ରମଣ ହେଲେ ଏବଂ କଫ ଓ ଶ୍ୱସନିକା ପ୍ରଦାହରେ ବିଶେଷ ହିତକର ।

ମାତ୍ରା—

ପୂର୍ଣ୍ଣ ବୟସ—୧ରୁ ୨ଟି ବଟିକା ଦିନକୁ ୩।୪ଥର ପ୍ରୟୋଗ କରାଯାଇପାରେ ବଟିକା ଦିନକୁ ତିନିଥର ଦିଆଯାଇପାରେ ।

ପ୍ୟାକିଂ—

ଦଶଟି ବଟିକାଥିବା ଷ୍ଟ୍ରିପରରେ ମିଳେ ।

ଡ଼ିଆସିନ୍—

ଅତିସାର, ଗ୍ରହଣୀ ଏବଂ କୌଣସି ପ୍ରକାର ତରଳ ମଳଭେଦ ବିରୋଧୀ । ବଟିକା, ଇଞ୍ଜେକ୍ସନ ।

ଅନ୍ତ୍ରମଣ୍ଡଳୀର ଉତ୍ତେଜନା ନାଶକ ଦ୍ରବ୍ୟମାନଙ୍କର ସଂଯୋଗରେ ପ୍ରସ୍ତୁତ ।

ଉପାଦାନ—

ପ୍ରତି ବଟିକାରେ ଥାଏ

| | |
|---|---|
| ପିତା କୋରେଇ | ୦.୦୭ ମି. ଗ୍ରା. |
| ବାଳ ହରିଡ଼ା | ୦.୩୨ ମି. ଗ୍ରା. |
| ବେଲ | ୦.୨୫ ମି. ଗ୍ରା. |
| ଦାରୁ ହଳଦୀ | ୫ ମି. ଗ୍ରା. |

ଔଷଧ ସଂରକ୍ଷକ Chorobutol I.P. ୦.୫ %

ଔଷଧ ଗୁଣଧର୍ମ—

ପିତା କୋରେଇ ଓ ବେଲର ଉପକାରିତା ସପରିଚିତ, ଏହା ଡାକ୍ତରି ତଥା

କବିରାଜି ଔଷଧମାନଙ୍କରେ ଅତିସାର, ଗ୍ରହଣୀ ଓ ଯେ କୌଣସି ତରଳ ମଳ ଭେଦ କ୍ଷେତ୍ରରେ ଦିଆଯାଇଥାଏ । ଏହା ନୂଆ ଓ ପୁରୁଣା ଅବସ୍ଥାରେ ସମାନ ଫଳ ଦେଇଥାଏ ।

ସୁନାଗେରୁ—ପେଟକାମୁଡ଼ିବା ଅବସ୍ଥାରେ ଏହା ପ୍ରୟୋଗ କଲେ ବିଶେଷ ଫଳ ମିଳିଥାଏ ।

ଦାରୁହଳଦୀ ଯାବତୀୟ ଆନ୍ତ୍ରିକ ସଂକ୍ରମଣ, ନୂତନ ପୁରାତନ ଅତିସାର ଓ ପାକସ୍ଥଳୀ ଜନିତ ରୋଗରେ ହିତକର ବୋଲି ନୂତନ ଗବେଷଣାଦ୍ୱାରା ପ୍ରମାଣିତ ହୋଇଅଛି ।

ଉପରୋକ୍ତ ଦ୍ରବ୍ୟଗୁଡ଼ିକର ଯଥାଯଥ ମିଶ୍ରଣ ହେତୁ ଏହା ରୋଗର ପ୍ରାଚୀନ ଅବସ୍ଥାରେ ବିଶେଷ ଫଳପ୍ରଦ ଭାବରେ ପ୍ରମାଣିତ ହୋଇଛି । ଏହି ଔଷଧଟିର ଶାମକ ଗୁଣ ହେତୁ ଆମ ଜନିତ,ପେଟର ଶୂଳ ବେଦନା କମାଇଦିଏ ।

ଡିଆସିନ ନିରାପଦ; ଏହାର କୌଣସି ପର ପ୍ରତିକ୍ରିୟା ଦେଖାଯାଏ ନାହିଁ ।

ପ୍ରୟୋଗ ସୂଚନା—

ଏହା ଏମୋବିକ ଡିସେଣ୍ଟ୍ରି, ବ୍ୟାସିଲରି ଡିସେଣ୍ଟ୍ରି ଓ ଆନ୍ତ୍ରିକ ଉତ୍ତେଜନା ବଶତଃ ତରଳ ମଳ ଭେଦ କ୍ଷେତ୍ରରେ କାର୍ଯ୍ୟକରେ । ଶିଶୁମାନଙ୍କର ତରଳ ଝାଡ଼ାରେ ଏହା ବିଶେଷ ସୁଫଳ ଦେଖାଇଥାଏ । ଡିଆସିନ୍‌ର ଇଞ୍ଜେକ୍‌ସନ୍ ମଧ୍ୟ ପ୍ରସ୍ତୁତ କରାଯାଇ-ଅଛି । ଶୀଘ୍ର ଉପକାର ପାଇଁ ଏହାକୁ ବଟିକା ଔଷଧ ଦେବା ସଙ୍ଗେ ସଙ୍ଗେ ମଧ୍ୟ ପ୍ରୟୋଗ କରାଯାଇପାରେ ।

ପ୍ୟାକିଂ—

ଦଶଟି ବଟିକାଥିବା ଷ୍ଟ୍ରିପର ମିଳେ
୨୫୦ଟି ବଟିକାଥିବା ଶିଶି
ବକ୍‌ସ ୧୦×୧ ଏମ୍‌ଏଲ ଆମ୍ପୁଲ
ବକ୍‌ସ ୫୦×୧ ଏମ୍. ଏମ୍.ଆମ୍ପୁଲ

ଏଣ୍ଟ୍ରୋପସ—

କାନ, ନାକ ଗଳାର କ୍ଷତ ନାଶକ । କେବଳ ବାହ୍ୟ ପ୍ରୟୋଗ ପାଇଁ **ଫଳପ୍ରଦ** ଜୀବାଣୁନାଶକ, କ୍ଷତ ପରିପୂରକ ଓ ବେଦନାନାଶକ ଦ୍ରବ୍ୟ ମିଶ୍ରଣରେ ପ୍ରସ୍ତୁତ । ଏଣୁ ଏହା ନିରାପଦ ଭାବରେ ଗଳା, ନାକ, କାନ ଓ ଦାନ୍ତ ମାଢ଼ିରେ ବାହ୍ୟ ପ୍ରୟୋଗପାଇଁ ବ୍ୟବହାର କରାଯାଇପାରେ ।

ବି. ଦ୍ର.—ଏହା ଆଖିରେ ପ୍ରୟୋଗ କରିବା ଅନୁଚିତ ।

ଉପାଦାନ—

୧୦୦ ଗ୍ରାମ ଖୋଳରେ ଥାଏ
ଫେନଲ୍ ଆଇ. ପି— ୦.୯୧ ଗ୍ରା.

| | |
|---|---|
| ଇଉକାଲିପସ୍ ଅଏଲ୍ ଆଇ. ପି– | ୧.୧୪ ଗ୍ରା. |
| କର୍ପୂର  ଆଇ. ପି.– | ୦.୨୫ ଗ୍ରା. |
| ବନସ୍ପତିଜ ତୈଳ– | Q.S. |

ପ୍ରୟୋଗ ସୂଚନା–

ପାଟି, ଗଳା ଦାନ୍ତ ମାଢ଼ିର ଯେ କୌଣସି ସଂକ୍ରମଣ ଅବସ୍ଥାରେ ବ୍ୟବହାର କରାଯାଇପାରେ । ତୁଣ୍ଡିକେରି (ଟନ୍‌ସିଲାଇଟିସ) ଶ୍ୱସନୀପ୍ରଦାହ,(ଫେରେଞ୍ଜାଇଟିସ୍)ରେ ଏହା ପ୍ରଯୁଜ୍ୟ ।

ଆବଶ୍ୟକ ସ୍ଥଳରେ ନାକ ଓ କାନରେ ବିନ୍ଦୁ ବିନ୍ଦୁ ପକାଯାଇପାରେ । କ୍ଷତ ରୋପଣ (ଡ୍ରେସିଂ)ପାଇଁ ତୂଳାରେ ଭିଜାଇ ପ୍ରତି ଚାରିଘଣ୍ଟା ଅନ୍ତରରେ ଥରେ ଲେଖାଏ ଦିଆଯାଇପାରେ ।

ପ୍ରୟୋଗ·

ଉଲ୍ ବା ତୁଳାରେ ବୁଡ଼ାଇ ପ୍ରତି ତିନି ଘଣ୍ଟା ଅନ୍ତରରେ ବ୍ୟବହାର କରାଯାଇ-ଥାଏ । ଦୁଇ ତିନି ଘଣ୍ଟା ଅନ୍ତରରେ ବୁନ୍ଦାଏ ଦୁଇବୁନ୍ଦା ବ୍ୟବହାର କରାଯାଇପାରେ ।

ଥଣ୍ଡା ଓ ଆଲୋକବିହୀନ ସ୍ଥାନରେ ରଖିବାକୁ ହେବ, ବ୍ୟବହାର କରିବା ପୂର୍ବରୁ ଶିଶିକୁ ଉତ୍ତମରୂପେ ହଲାଇ ଦେବାକୁ ହେବ ।

ପ୍ୟାକିଂ –

୩୨. ଏମ୍. ଏଲ. ଶିଶି
୧୨୫ ଏମ୍. ଏଲ. ଶିଶିରେ ମିଳେ ।

ଫ୍ଲୁଜେନ–

ଏନ୍‌ଫ୍ଲୁଏନଞ୍ଜା ନାଶକ ବଟିକା ।

ପେଶୀ ବେଦନା, ଶ୍ୱାସନଳୀର ଦୋଷ ଓ ଇନ୍‌ଫ୍ଲୁଏନଜା ନାଶକ କେତେକ ଫଳପ୍ରଦ ବନସ୍ପତି ସଙ୍ଗେ ସାଲିସାଇଲାମାଇଡ଼ ମିଶ୍ରଣରେ ଏହା ପ୍ରସ୍ତୁତ ।

ଉପାଦାନ–

ପ୍ରତି ବଟିକାରେ ଥାଏ

| | |
|---|---|
| ସାଲିସାଇଲାମାଇଡ଼ ଏନ୍. ଏଫ୍. | ୨୦୦ ମି. ଗ୍ରା. |
| କୃଷ୍ଣକଟୁକୀ (Helleborus niger) | ୫ ମି. ଗ୍ରା. |
| ରସୁଣ ( Allium Sativum ) | ୦.୧ ମି. ଗ୍ରା. |
| ଜାଇଫଳ ( Myristica fragrans) | ୦.୪ ମି. ଗ୍ରା. |

ଔଷଧର ଗୁଣଧର୍ମ –

ଆସିଟେଲସାଲିସାଲିକ୍ ଏସିଡ୍ ଅନୁରୂପ ସାଲିସାଇଲାମାଇଡ୍ ବେଦନା-ହାରକ, ଜ୍ୱର ନାଶକ ପ୍ରଦାହ ନାଶକ । ଏହା ଶରୀର ମଧ୍ୟରୁ ଶୀଘ୍ର କାର୍ଯ୍ୟ କରିଥାଏ ।

ଅନ୍ୟାନ୍ୟ ବନସ୍ପତିଗୁଡ଼ିକ କଫ ନିଃସାରକ, କ୍ଷତନିବାରକ ଏବଂ ଶ୍ୱାସନଳୀର ପ୍ରଦାହ, କଫ ଜମାଟ ବାନ୍ଧିବା ଅବସ୍ଥା ଦୂର କରିବାରେ ବିଶେଷ ହିତକାର

**ପ୍ରୟୋଗ ସୂଚନା–**

ପେଶୀ ବେଦନା ବା ଶ୍ୱାସନଳୀର ପ୍ରଦାହ ସଙ୍ଗେ ଇନ୍‌ଫ୍ଲୁଏଞ୍ଜା ରୋଗରେ ବିଶେଷ ପ୍ରଯୁଜ୍ୟ । ସାଧାରଣରେ ଇନ୍‌ଫ୍ଲୁଏନ୍‌ଜା ବ୍ୟାପିବା ସମୟରେ ଏହାକୁ ପ୍ରତି-ଷେଧକ ଭାବରେ ବ୍ୟବହାର କରାଯାଇପାରେ ।

**ମାତ୍ରା–**

ପୂର୍ଣ୍ଣ ବୟସ୍କ– ୧/୨ରୁ ୧ଟି ବଟିକା ଦିନକୁ ତିନିଥର ।

ଶିଶୁ– ୧/[illegible] ରୁ ୧/୨ ବଟିକା ଦିନକୁ ତିନିଥର ।

**ପ୍ୟାକିଂ–**

ଦଶଟି ବଟିକାଥିବା ଷ୍ଟ୍ରିପର, ୨୫୦ଟି ବଟିକାଥିବା ଶିଶି ।

**ଫେରସ ଫ୍ୟୁମରେଟ–**

ରକ୍ତ ଜନନପାଇଁ ଫଳପ୍ରଦ ଓ ନିରାପଦ ଯୋଗ,

ରକ୍ତହୀନତା ସ୍ଥଳରେ ବିଶେଷ ପ୍ରଯୁଜ୍ୟ ।

**ଉପାଦାନ–**

ପ୍ରତି ବଟିକାରେ ଥାଏ

ଫେରସ୍‌ଫ୍ୟୁମରେଟ ଆଇ. ପି. ୨୦୦ ମି. ଗ୍ରା.

ଫେରସ୍ ଫ୍ୟୁମରେଟ ଶରୀରରେ ଶୀଘ୍ର ମିଶି ପାରୁଥିବା, ଫଳପ୍ରଦ ଉପଦ୍ରବ-ହୀନ ଲୌହଜାତ ଲବଣ । ଏହା ୬୫. ମି. ଗ୍ରା. ମୌଳିକ ଲୌହ ସଙ୍ଗେ ପ୍ରାୟ ସମାନ ।

**ପ୍ରୟୋଗ ସୂଚନା–**

କ୍ରିମି, ବକ୍ରକ୍ରିମି (ହୂକ୍‌ଓ୍ୱାର୍ମ) ରକ୍ତସ୍ରାବ, ଅର୍ଶଜନିତ ରକ୍ତକ୍ଷୟ, ଖାଦ୍ୟରେ ଲୌହ ଅଭାବଜନିତ ରକ୍ତହୀନତା, ଅକାଳଜାତ ଶିଶୁର ଓଜନ ଅଭିବୃଦ୍ଧିପାଇଁ ଆବଶ୍ୟକ ସ୍ଥଳରେ ପ୍ରଯୁଜ୍ୟ । ବୟସାଧିକ୍ୟ ଓ ରୋଗୋତ୍ତର ଅବସ୍ଥାରେ ରକ୍ତ-କଣିକାର ପରିମାଣ ଠିକ୍ ରଖିବା ପାଇଁ ପ୍ରୟୋଗ କରାଯାଇପାରେ । ରକ୍ତହୀନତାର ପ୍ରାଥମିକ ସ୍ତରରେ ଲୌହର ପରିପୂରଣ କରା ନ ଗଲେ ଔଷଧ ବ୍ୟବହାର ବନ୍ଦ କରିଦେବା ପରେ ପରେ ପୁନର୍ବାର ରୋଗ ଆକ୍ରମଣ କରିଥାଏ ।

**ମାତ୍ରା–**

୧ରୁ ୩ଟି ବଟିକା ପ୍ରତିଦିନ ଭୋଜନ ପରେ ସେବ୍ୟ । ଆବଶ୍ୟକସ୍ଥଳରେ ଚିକିତ୍ସକ ଏହି ମାତ୍ରା ବଢ଼ାଇପାରନ୍ତି ବା କମାଇପାରନ୍ତି । ଶିଶୁମାନଙ୍କୁ ୧/୨ରୁ ୧ଟି ବଟିକା ଦିଆଯାଇଥାଏ ।

ଅନ୍ତକ୍ଷତ ବା ସାତ୍ମୀକରଣ କ୍ରିୟାର ବ୍ୟାଘାତ ସ୍ଥଳରେ ଏହା ପ୍ରୟୋଗ କରିବା ଅନୁଚିତ ।

ପ୍ୟାକିଂ—

ଗୋଟିଏ ପ୍ୟାକେଟରେ ୫୦ରୁ ୫୦୦ ବଟିକା ଥାଏ ।

ଗ୍ୟାଷ୍ଟ୍ରୋମୋନ—

ପେଟଫାମ୍ପିବା ବା ସ୍ନାୟବିକ କାରଣ ଜନିତ ଅଗ୍ନିମାନ୍ଦ୍ୟ ରୋଗରେ ପ୍ରଯୁଜ୍ୟ ।

ଉପାଦାନ—

ପ୍ରତି ବଟିକାରେ ଥାଏ ।

| | |
|---|---|
| ରେଓଚିନି | ୧୮ ମି. ଗ୍ରା. |
| ବାଳହରିଡ଼ା | ୧୪ ମି. ଗ୍ରା. |
| ସଉପ | ୧୪ ମି. ଗ୍ରା. |
| ଅଁଳା .. .. | ୧୪ ମି. ଗ୍ରା. |

ଅଳ୍ପ ପରିମାଣରେ ରେଓଚିନି ଓ ବାଳ ହରିଡ଼ା ପ୍ରୟୋଗ କଲେ ଏହା ରୋଧକ ଔଷଧର କାର୍ଯ୍ୟକରେ । ଏଣୁ ଏହା ଅତିସାର ରୋଗରେ ଉତ୍ତମ ଫଳ ଦେଖାଇଥାଏ । ସଉପ ପେଟଫମ୍ପା ଦୂର କରିବାରେ ସାହାଯ୍ୟ କରେ । ଅଁଳା ମଳ ନିଃସାରଣ କ୍ରିୟାକୁ ନିୟନ୍ତ୍ରଣ କରିବାରେ ବିଶେଷ ସହାୟକ । ଏହି ଚାରିଟି ଦ୍ରବ୍ୟର ମିଶ୍ରିତ ଯୋଗ ପାକସ୍ଥଳୀ ଓ ଅନ୍ତ୍ରର କାର୍ଯ୍ୟକୁ ନିୟମିତ ରଖିବାରେ ସାହାଯ୍ୟକରେ ।

ପ୍ରୟୋଗ ସୂଚନା—

ପରିପାକ ଶକ୍ତିହୀନତା, ପେଟଫାମ୍ପିବା, ସ୍ନାୟୁଜନିତ ଅଗ୍ନିମାନ୍ଦ୍ୟ, ଶିଶୁ ତଥା ବୟସ୍କମାନଙ୍କର ଅତିସାର ରୋଗରେ ବିଶେଷ ହିତକାରୀ । ଯକୃତ କ୍ରିୟାର ସମତା ବିଧାନ ସଙ୍ଗେ ପିତ୍ତାଧିକ୍ୟ ଓ ପିତ୍ତହୀନତା ଜନିତ ଅଜୀର୍ଣ୍ଣ ରୋଗରେ ଫଳପ୍ରଦ ଭାବରେ କାର୍ଯ୍ୟ କରିଥାଏ ।

ମାତ୍ରା—

ଖାଇବାର ପନ୍ଦର ମିନିଟ ଅବ୍ୟବହିତ ପୂର୍ବରୁ ବା ପରେ ପ୍ରୟୋଗ କରିବା ଆବଶ୍ୟକ ଥରକୁ ୧ରୁ ଦୁଇଟି ।

ଶିଶୁମାନଙ୍କୁ ୧/୪ ଟିକାରୁ ୧/୨ ବଟିକା ଦିଆଯାଇଥାଏ

ପ୍ୟାକିଂ—

ଗୋଟିଏ ଶିଶିରେ ପଚାଶଟି ବଟିକା ଥାଏ ।

ଗ୍ରାଣ୍ଡିକୋ –

ହୃତ୍‌କ୍ରିୟା ପୋଷକ (Cardiac Tonic)

ଆୟୁର୍ବେଦ ଚିକିତ୍ସାରେ ହୃତ୍କ୍ରିୟା ପୋଷକ ଓ ମୂତ୍ର ବର୍ଦ୍ଧକ ଦ୍ରବ୍ୟ ଭାବରେ ବହୁଳ ପ୍ରଚଳିତ କେତେକ ଦ୍ରବ୍ୟର ସଂଯୋଗରେ ପ୍ରସ୍ତୁତ ।

ଉପାଦାନ—

ପ୍ରତିବଟିକାରେ ଥାଏ

| | |
|---|---|
| ଅର୍ଜୁନଛାଲି | ୧୦୪ ମି.ଗ୍ରା |
| ଅଶ୍ୱଗନ୍ଧା | ୫୦ ମି.ଗ୍ରା |
| ପୁରୁଣୀ | ୧୨୦ ମି.ଗ୍ରା |
| ଖୁରାସାନି ଜୁଆଣି | ୫୨ ମି.ଗ୍ରା |

ଅର୍ଜୁନ, ଅଶ୍ୱଗନ୍ଧା, ପୁରୁଣୀ ହୃତ୍କ୍ରିୟା ପୋଷଣ କାର୍ଯ୍ୟ କରେ ଏବଂ ମୂତ୍ରର ପରିମାଣ ବଢ଼ାଇ ଶରୀରରୁ ଦୂଷିତ ପଦାର୍ଥକୁ ବାହାର କରି ଦେବାରେ ସାହାଯ୍ୟ କରେ । ଖୁରାସାନି ଜୁଆଣି ମୃଦୁ ଶାମକ ଔଷଧ ଭାବରେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ହୃତକ୍ରିୟାକୁ ଉଦ୍ଦୀପିତ କରେ ।

ପ୍ରୟୋଗ ସୂଚନା—

ଏହା ହତ୍କ୍ରିୟାର ପୋଷଣ କାର୍ଯ୍ୟ କରୁଥିବା ହେତୁ ଅତ୍ୟଧିକ ହୃତ୍ସ୍ପନ୍ଦନ ଶ୍ୱାସକଷ୍ଟ ଦୂର କରିଥାଏ । ଏହି ଔଷଧଟି ସର୍ବଥା ମାଦକ ଗୁଣରୁ ମୁକ୍ତ । ଏହା ଶୋଥ ରୋଗରେ ଉତ୍ତମ ମୂତ୍ରଳ ଔଷଧର କାର୍ଯ୍ୟକରେ । ହୃତକ୍ରିୟା ଓ ମୂତ୍ର ପ୍ରଜନନ ପ୍ରକ୍ରିୟାର ବିଭିନ୍ନ ବିକୃତି ସ୍ଥଳରେ ସଫଳ ଦେଖାଇ ଥାଏ ।

ମାତ୍ରା—

୧।୨ରୁ ୧ଟି ବଟିକା, ଦିନ ଭିତରେ ତିନିଥର ଦିଆ ଯାଇପାରେ । ହୃତ୍ ବିକାର ଜନିତ ଶ୍ୱାସ ରୋଗରେ ଏହା ଅଧିକ ବାର ଦିଆଯାଇ ପାରେ ।

ପ୍ୟାକିଂ—

ଗୋଟିଏ ଶିଶିରେ ୫୦ଟି ବଟିକା ଥାଏ ।

ହିମାଲନ—

ପୂୟ ଓ କ୍ଷତ ନାଶକ ଚୂର୍ଣ୍ଣ

ଯାବତୀୟ କ୍ଷତ, ବ୍ରଣ ଉପରେ ଜୀବାଣୁ ନାଶକ ଚୂର୍ଣ୍ଣ ଭାବରେ ବ୍ୟବହାର କରାଯାଇ ପାରେ ।

ଉପାଦାନ—

ପ୍ରତି ଶହେଗ୍ରାମରେ ଥାଏ ।

| | |
|---|---|
| ଆଇଡ୍ରୋଫର୍ମ ଏନ. ଏଫ | ୨.୨୯ ମି.ଗ୍ରା |
| ଫିଟକିରି ଆଇ. ପି | ୨.୨୯ ମିଗ୍ରା |

| | |
|---|---|
| ବୋରିକ ଏସିଡ଼ ଆଇ.ପି | ୬.୮୬ ମିଗ୍ରା |
| ହଳଦୀ | ୬.୮୦ ମିଗ୍ରା |

ଔଷଧର ଗୁଣଧର୍ମ—

ଆଇଡ଼ୋଫର୍ମ ଏବଂ ବୋରିକ ଏସିଡ଼ ପୂୟ ନାଶକ ଓ କ୍ଷତ ନାମକ ଔଷଧ ଭାବରେ ସୁପ୍ରଚଳିତ । ଫିଟକିରି ବିଶେଷ ରକ୍ତରୋଧକ । ହଳଦୀ ମଧ୍ୟ ପୂୟନାଶକ ଓ ସ୍ଥାନୀୟ ବେଦନାହାରକ ଦ୍ରବ୍ୟ ଭାବରେ ସୁବିଦିତ ।

ଏହି ଚୂର୍ଣ୍ଣ କ୍ଷତ ସ୍ଥାନରେ ପକାଇଦେଲେ ଆଇଡ଼ୋଫର୍ମରୁ ଆଇଓଡ଼ିନ୍ ତଳକୁ ବହି ଗ୍ଲେ ଏବଂ ଜୀବାଣୁ ଉତ୍ପାଦନକୁ ବନ୍ଦ କରେ । କ୍ଷତ ମୁହଁରେ ଉକ୍ତ ଚୂର୍ଣ୍ଣ ପଡ଼ିବା ଦ୍ୱାରା ପୂୟସ୍ରାବ ବନ୍ଦ ହୋଇଯାଏ । କ୍ଷତର ମୁହଁ ଶୁଖିଯାଏ ।

ପ୍ରୟୋଗବିଧି—

ଏହାକୁ କ୍ଷତ ଉପରେ ପକାଇ ଦିଆଯାଇ ପାରେ । ସ୍ଥଳ ବିଶେଷରେ ତୁଳା ବା ଗଜ୍‌କନା ସାହାଯ୍ୟରେ କ୍ଷତ ଭିତରେକୁ ପୂରାଇ ଦେଇ ଉପରେ ପଟି ବାନ୍ଧି ଦିଆଯାଇ ପାରେ ।

କାନରୁ ପୂୟ ବାହାରୁଥିଲେ ଏହାକୁ କାନରେ ପକାଇ ଉପରେ ତୁଳା ଦେଇ ବନ୍ଦ କରାଯାଇପାରେ । ଦିନେ ଦୁଇଦିନ ପରେ କାନକୁ ସଫା କରି ଦିଆ ଯାଇ ପାରେ । ଏହିପରି ଦୁଇତିନିଥର କଲେ କାନର ପୂୟ ବାହାରିବା ବନ୍ଦ ହୋଇ-ଯାଏ ।

ପ୍ୟାକିଂ—

୧୧ ଗ୍ରାମ.ଶିଶି
୧୧୦ ଗ୍ରାମ ଶିଶି

ହିମୋପ୍ଲେକସ୍—

ସଂକ୍ରମଣନାଶକ ବଟିକା

ଆୟୁର୍ବେଦ ଚିକିତ୍ସାରେ ବ୍ୟାବହୃତ କେତେକ ସଂକ୍ରମଣ ରୋଧକ ଦ୍ରବ୍ୟର ମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ—

ପ୍ରତ୍ୟେକଟି ବଟିକାରେ ଥାଏ

| | |
|---|---|
| ଚିରେଇତା | ୪୦ ମି.ଗ୍ରା |
| ସାଲସା | ୬୦ ମି.ଗ୍ରା |
| ସ୍ୱର୍ଣ୍ଣକ୍ଷୀରି (କଣ୍ଟା କୁସୁମ) | ୬ ମି.ଗ୍ରା |
| ଅରଖ | ୩୨ ମି.ଗ୍ରା |

| | |
|---|---|
| ଅଶ୍ୱଗନ୍ଧା | ୪୦ ମି.ଗ୍ରା |
| ଗନ୍ଧକ | ୨ ମି.ଗ୍ରା |

**ଔଷଧର ଗୁଣଧର୍ମ—**

ଆୟୁର୍ବେଦ ଚିକିତ୍ସା ଶାସ୍ତ୍ରରେ ପ୍ରଚଳିତ କେତେକ ଫୁଲ, ବିଷାକ୍ତ କ୍ଷତ ନାଶକ ଦ୍ରବ୍ୟର ସଂଯୋଗରେ ଏହି ଔଷଧଟି ପ୍ରସ୍ତୁତ । ଅତି ପୁରୁଣା କ୍ଷତ ପାଇଁ ଏହା ବିଶେଷ ପ୍ରଯୁଜ୍ୟ ।

**ପ୍ରୟୋଗ ସୂଚନା—**

ବଥ, କ୍ଷତ, ବ୍ରଣ, ପଗ୍‌ଘା, ପୁରାତନ ଶ୍ୱସନିକା ପ୍ରଦାହ, ପୁରୁଣା ତୁଣ୍ଡିକେରି ପ୍ରଦାହ (କ୍ରନିକ ଟନ୍‌ସିଲଇଟ୍‌ସ) ରୋଗରେ ବିଶେଷ ଉପକାରକ ।

**ମାତ୍ରା—**

ପୂର୍ଣ୍ଣ ବୟସ୍କମାନଙ୍କପାଇଁ ୧ରୁ ୨ଟି ବଟିକା ଦିନକୁ ତିନିଥର

ଶିଶୁ ୧ ରୁ ୧/୨ ବଟିକା ଦିନକୁ ତିନିଥର ।

ରୋଗ ଆକ୍ରମଣର ତୀବ୍ରତା ଓ ଲଘୁତା ଅନୁଯାୟୀ ଔଷଧର ମାତ୍ରା ବଢ଼ାଇବାକୁ କମାଇବାକୁ ହେବ ।

**ପ୍ୟାକିଂ—**

ଗୋଟିଏ ଶିଶିରେ ପଚାଶଟି ବଟିକା ଥାଏ ।

**ହରବିଟରସ—**

(ପୂର୍ବତନ ନାମ ହର୍ବାଲ ବିଟରସ୍)

ଯକୃତ୍ ରୋଗ ନାଶକ

ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ କେତେକ ବନସ୍ପତି ସାହାଯ୍ୟରେ ଏହା ପ୍ରସ୍ତୁତ । ଅଗ୍ନିମାନ୍ଦ୍ୟ, କୋଷ୍ଠବଦ୍ଧତା, ଯକୃତ୍ କ୍ରିୟାର ମନ୍ଦତା ଓ ପିତ୍ତାଧିକ୍ୟ ସ୍ଥଳରେ ପ୍ରୟୋଗ କରାଯାଇଥାଏ ।

**ଉପାଦାନ—**

ପ୍ରତି ବଟିକାରେ ଥାଏ

| | |
|---|---|
| ଚିରେଇତା | ୫୫ ମି. ଗ୍ରା. |
| ମଞ୍ଜିଷ୍ଠା | ୫୦ ମି. ଗ୍ରା. |
| ସୁନାମୁଖୀ | ୭୫ ମି. ଗ୍ରା. |
| ସଉପ | ୧୫ ମି. ଗ୍ରା. |
| ଭୃଙ୍ଗରାଜ | ୩୦ ମି. ଗ୍ରା. |

**ଔଷଧର ଗୁଣଧର୍ମ—**

ଚିରେଇତା ଓ ମଞ୍ଜିଷ୍ଠାର ମିଶ୍ରଣ କ୍ଷୁଧା ବୃଦ୍ଧି କରିଥାଏ; ଏହା ଯେ କୌଣସି କାରଣରୁ ଶରୀର ମଧ୍ୟରେ ଗରକ୍ରିୟା (ଟକ୍‌ସିନ୍) ବା ବିଷକ୍ରିୟା ହେଉଥିଲେ

ଦୂର କରିଥାଏ । ସୁନାମୁଖୀ ଓ ସଉପ ପିତ୍ତର ନିଃସରଣକୁ ନିୟମିତ କରାଇଥାଏ ଏବଂ ଯକୃତ କ୍ରିୟାକୁ ଉଦୀପ୍ତ କରାଇଥାଏ ।.ଯକୃତ ଓ ପ୍ଲୀହାର ବୃଦ୍ଧି ଦୂର କରିବାରେ ଭୃଙ୍ଗରାଜର ଗୁଣ ସୁପ୍ରମାଣିତ । ଏହା ଶ୍ଳେଷ୍ମା ପ୍ରଭାବିତ କାମଳ ଦୂର କରିଥାଏ ଏବଂ ଯକୃତ କୋଷଗୁଡ଼ିକର କ୍ରିୟାକୁ ନିୟମିତ ଓ ଉନ୍ନତ କରିବାରେ ସାହାଯ୍ୟ କରିଥାଏ । ଏହା ମଧ୍ୟ ଯକୃତ୍ ବୃଦ୍ଧି ଜନିତ ଉଦରୀ ରୋଗରେ ପ୍ରୟୋଗ କରାଯାଇଥାଏ ।

ପ୍ରୟୋଗ ସୂଚନା –

ଯକୃତ୍ ବିକାର, ଅଗ୍ନିମାନ୍ଦ୍ୟ ପେଟଫାମ୍ପି ଝାଡ଼ାହେବା, କୋଷ୍ଠବଦ୍ଧତା ପିତ୍ତକ୍ଷରଣର ବିଷମତା, ଯକୃତରେ ଜଳ ସଂଚିତ ହେବା, ଜୀବାଣୁନାଶକ ତୀବ୍ର ଔଷଧର ଅତ୍ୟଧିକ ବ୍ୟବହାର ବା ଜନ୍ମନିରୋଧ ପାଇଁ ନିୟମିତ ଔଷଧ ବ୍ୟବହାର ଦ୍ୱାରା ଯକୃତ୍‌ର ଅବକ୍ଷୟ ଘଟି ଯକୃତ୍ ବିକାର ଦେଖାଯାଉଥିବା ସ୍ଥଳରେ ଏହା ପ୍ରଯୁଜ୍ୟ ।

ମାତ୍ରା—

ପୂର୍ଣ୍ଣ ବୟସ୍କ—ପ୍ରଥମ ସପ୍ତାହ ଦିନକୁ ଦୁଇଟି ତିନିଟି ବଟିକା ଭୋଜନ ପୂର୍ବରୁ ସେବ୍ୟ । ଏହି ନିୟମରେ ତିନି ସପ୍ତାହ ଚଳିବାକୁ ହେବ । ଦ୍ୱିତୀୟ ଓ ତୃତୀୟ ସପ୍ତାହରେ ଗୋଟିଏ ଲେଖାଏ ବଟିକା ନିଜର ପ୍ରଧାନ ଖାଦ୍ୟ ଖାଇବା ପୂର୍ବରୁ ବ୍ୟବହାର କରିବାକୁ ହେବ ।

ଶିଶୁ—ବୟସ୍କ ମାତ୍ରାର ଅଧା ପରିମାଣ

ଏହି ଔଷଧ ଦିନକୁ ଦୁଇଟାରୁ ତିନିଟି ଆବଶ୍ୟକତାନୁଯାୟୀ ମାସାବଧି ଦିଆଯାଇପାରେ । ଏହି ଔଷଧ ବ୍ୟବହାର କରୁଥିବା ସମୟରେ ପ୍ରଚୁର ଜଳ ପିଇବା ଆବଶ୍ୟକ ।

କାମଳ ରୋଗ ଚିକିତ୍ସା ସମୟରେ ଏହାକୁ କାଇନୋଟୋମିନ୍ ସହିତ ଦେଲେ ବିଶେଷ ଉପକାର ହୋଇଥାଏ ।

ଅଗ୍ନିମାନ୍ଦ୍ୟ ସ୍ଥଳରେ ମାଗ୍ନିନ୍ ସହ ପ୍ରୟୋଗ ବିଶେଷ ଫଳପ୍ରଦ ହୋଇଥାଏ ।

ପିତ୍ତାଧିକ୍ୟ ହେତୁ ବାନ୍ତି ବାନ୍ତିଭାବ, ଅରୁଚି ପ୍ରଭୃତି ସ୍ଥଳରେ ଏହାକୁ ଭାଇଟାଲ ଏସେନ୍‌ସ ସହିତ ଦେବା ଆବଶ୍ୟକ ।

ପ୍ୟାକିଂ—

ଗୋଟିଏ ଶିଶିରେ ୫୦ଟି ବଟିକା ଥାଏ (ଶର୍କରା ଅବଲେପତ)

ଗୋଟିଏ ଶିଶିରେ ୫୦୦ ବଟିକା ଥାଏ (ଶର୍କରା ଅବଲେପିତ)

ହରବିଟରସି ମଧ୍ୟ ଶିଶୁ ବ୍ୟବହାରର ସୁବିଧା ପାଇଁ ତରଳ ଓ ସୁସ୍ୱାଦୁ ସିରପ୍ ଭାବରେ ମିଳେ ।

ଉପାଦାନ—

ପ୍ରତି ଗ୍ରହାଗ୍ରମଚ (ଆନୁମାନିକ ୫ ଏମ୍ ଏଲ) ରେ ଥାଏ

| | |
|---|---|
| ଚିରେଇତା | ୧୪ ମି. ଗ୍ରା: |
| ମଞ୍ଜିଷ୍ଠା | ୧୨ ମି. ଗ୍ରା. |
| ସୁନାମୁଖୀ | ୧୯ ମି. ଗ୍ରା. |
| ସଉପ | ୪ ମି. ଗ୍ରା. |
| ଭୃଙ୍ଗରାଜ | ୮ ମି. ଗ୍ରା. |

ମାତ୍ରା—୧ ଚାମଚରୁ ଦୁଇ ଚାମଚ ଦିନକୁ ଦୁଇ ତିନିଥର ।

ପ୍ୟାକିଂ—୧୦୦ ଏମ୍ , ଏଲ ଥିବା ଶିଶି ।

ହାର୍ବୋସଲ୍‌ଫ—

କ୍ଷତ ଓ ପୂୟ ଦୂର କରିବାରେ ଆଭ୍ୟନ୍ତରୀଣ ପ୍ରୟୋଗ ପାଇଁ ଉଦ୍ଦିଷ୍ଟ ।

ଯେଉଁ ବନସ୍ପତି ଆଭ୍ୟନ୍ତରୀଣ କ୍ଷତ ଓ ପୂୟ ଦୂରକରେ ପୁରାତନ ଚର୍ମରୋଗ ପାମା (ଏକଜିମା) ପ୍ରଭୃତି ଦୂର କରିବାରେ ସାହାଯ୍ୟକରେ ସେହିପରି କେତେକ ବନସ୍ପତି ମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ—

ପ୍ରତିଟି ବଟିକାରେ ଥାଏ ।

| | |
|---|---|
| ଗନ୍ଧକ | ୨୨ ମି. ଗ୍ରା. |
| ହଳଦୀ | ୩୨ ମି. ଗ୍ରା. |
| ଅରଖ | ୪୦ ମି. ଗ୍ରା. |

ମାତ୍ରା—

୧ରୁ ୨ଟି ବଟିକା ଦିନକୁ ତିନିଥର ।

ହାର୍ବୋ ସଲଫ୍ ବଟିକାକୁ ଚୂର୍ଣ୍ଣକରି ଏକ ଭାଗରେ ପାଞ୍ଚଭାଗ ଭେସ୍‌ଲିନ୍ ସହିତ ମିଶାଇ ବାହାରେ ବବ୍ୟହାର କରାଯାଇପାରେ । ଏହାକୁ ରିପାଣ୍ଟୋ ସହିତ ମିଶାଇ ଆକ୍ରାନ୍ତ ସ୍ଥଳରେ ଗାଇଲେ ବିଶେଷ ଫଳ ମିଳେ । ପ୍ରଥମେ ଆକ୍ରାନ୍ତ ସ୍ଥାନକୁ ଗରମପାଣିରେ ଧୋଇନେଇଲଶୁଖିଲ କନା ବା ତୂଳାରେ ଛାପିନେଇ କ୍ଷତ ସ୍ଥାନଟି ଶୁଖାଇ ତାପରେ ଔଷଧ ବ୍ୟବହାର କରାଯାଇପାରେ ।

ପ୍ୟାକିଂ—

ଦଶଟି ବଟିକାଥିବା ଷ୍ଟ୍ରିପ୍

୨୫୦ ବଟିକାଥିବା ଶିଶି ।

ହରମୋପାଇରିନ-

ଜ୍ୱର ଓ ବେଦନାହାରକ ।

ଆୟୁର୍ବେଦୀୟ ଓ ଏଲୋପାଥିକ ଚିକିତ୍ସାରେ ପ୍ରଚଳିତ କେତେକ ଜ୍ୱର ନାଶକ,

ବେଦନାହାରକ ଓ ପ୍ରବାହ ବିରୋଧୀ ଦ୍ରବ୍ୟ ସଂଯୋଗରେ ପ୍ରସ୍ତୁତ ।

ଉପାଦାନ—

ପ୍ରତିଟି ବଟିକାରେ ଥାଏ ।

| | | |
|---|---|---|
| ପାରାସିଟାମୋଲ | ( Paracetamol B.P.) | ୧୧୦ ମି. ଗ୍ରା |
| କୁଇନାଇନ୍ ସଲ୍‌ଫେଟ | ( QuinineSulphate I.P.) | ୫ ମି. ଗ୍ରା. |
| ସାଲିସିଲମାଇଡ଼ | ( Salicylamide N.F. ) | ୧୨୫ମି. ଗ୍ରା. |
| ବାସଙ୍ଗ | | ୧୬ ମି. ଗ୍ରା. |
| ଗୁଳୁଚି | | ୩୦ ମି. ଗ୍ରା. |
| ଅରଖ | | ୪ ମି. ଗ୍ରା. |

ଔଷଧର ଗୁଣଧର୍ମ

ପାରାସିଟାମଲ ଏବଂ ସାଲିସିଲମାଇଡ଼ର ଆସପିରିନ୍ ପରି ଜ୍ୱର ଓ ବେଦନା-ହାରକ, କିନ୍ତୁ ଏହା ଆସ୍‌ପିରିନ୍ ଅପେକ୍ଷା କମ୍ ନିରୁପଦ୍ରବ ଜନକ.। ସ୍ୱଳ୍ପମାତ୍ରାରେ କୁଇନାଇନ୍ ବ୍ୟବହାର କରିବାଦ୍ୱାରା ଏହା ସର୍ଦ୍ଦି, କଫ ବେଦନା ଓ ଜ୍ୱର ଦୂରକରିବାରେ ସାହାଯ୍ୟକାରୀ ହୋଇଥାଏ । ଦେହରୁ ଝାଳ ବାହାର କରିବା ଗୁଣ ହେତୁ ଶୀଘ୍ର ଜ୍ୱରର ଉତ୍ତାପ ମାତ୍ରା କମାଇବାକୁ ସମର୍ଥ ହୋଇଥାଏ ।

କଫ ଓ କାଶ ଜ୍ୱର କରିବାରେ ବାସଙ୍ଗର ଗୁଣ ସୁପରିଚିତ । ଗୁଳୁଚୀ ଜ୍ୱର ନାଶକ ଓ ପାଚକ ଓ ଅନ୍ତବାୟୁନାଶକ । ଅର୍କ କଫ ନିସାରକ ଘର୍ମକାରକ, ଜ୍ୱର ନାଶକ, କଫ ରୋଧକ ଦ୍ରବ୍ୟ ଭାବରେ ଭାରତବର୍ଷରେ ବହୁଦିନୁ ପ୍ରଚଳିତ ।

ପ୍ରୟୋଗ ସୂଚନା—

ଜ୍ୱରନାଶକ ବେଦନାହାରକ, ସର୍ଦ୍ଦି, କଫ ଇନଫ୍ଲୁଏଞ୍ଜା, ଠେଙ୍ଗାଜ୍ୱର, ଆମବାତ ଜ୍ୱର ଓ ଶ୍ୱସନିକା ପ୍ରଦାହରେ ହିତକର ।

ବେଦନାହାରକ ଗୁଣ ଥିବାରୁ ମୁଣ୍ଡବିନ୍ଧା, ଦାନ୍ତଶୂଳ, କର୍ଣ୍ଣଶୂଳ, ପେଶୀପୀଡ଼, ସ୍ନାୟୁ ସନ୍ଧି ପୀଡ଼ାରେ ପ୍ରୟୋଗ କଲେ ସୁଫଳ ମିଳେ ।

ମାତ୍ରା –

ପୂର୍ଣ୍ଣ ବୟସ୍କମାନଙ୍କ ପାଇଁ ୧ରୁ ୩ଟି ବଟିକା ପ୍ରତିଦିନ

ଶିଶୁ ½ରୁ ୩ରୁ ୪ଟି ଥର ପ୍ରତିଦିନ ।

ପ୍ୟାକିଂ—

୫୦ଟି ବଟିକା ଥିବା ଶିଶି

୫୦୦ ବଟିକା ଥିବା ଟିଣ

ଆଇଓବିନ—

ଘନ ଘନ ସର୍ଦ୍ଦି ଆକ୍ରମଣ ନିରୋଧକ ଇଞ୍ଜେକ୍‌ସନ ଓ ବଟିକା । ବାରମ୍ବାର

ସର୍ଦ୍ଦି ଆକ୍ରମଣ ବିରୁଦ୍ଧରେ ଶାରୀରିକ କ୍ଷମତା ବୃଦ୍ଧି କରିପାରୁଥିବା ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ କେତେକ ବନସ୍ପତି ମିଶ୍ରଣରେ ପ୍ରସ୍ତୁତ । ଏହା ମଧ୍ୟ ତୁଣ୍ଡିକେରି ପ୍ରଦାହ (ଟନ୍‌ସିଲାଇଟିସ୍) ଏଲର୍ଜି (ଅସାତ୍ମ୍ୟ ସଂଯୋଗାଦି ବିକାର ଦୂର କରିବାରେ ସାହାଯ୍ୟ କରେ ।

ଉପାଦାନ—

ପ୍ରତି ବଟିକାରେ ଥାଏ

| | |
|---|---|
| ବ୍ରାହ୍ମୀ | ୪୦ ମି. ଗ୍ରା. |
| ଚିରେଇତା | ୪୦ ମି. ଗ୍ରା. |
| ଗନ୍ଧକ | ୭.୨ ମି. ଗ୍ରା. |
| ସାଲସା | ୧୪୦ ମି. ଗ୍ରା. |

ପ୍ରତି ଏମ୍. ଏଲରେ ଥାଏ

| | |
|---|---|
| ଅରଖ | ୦.୬ ମି.ଗ୍ରା |
| ସାଲସା | ୦.୭ ମି.ଗ୍ରା |
| ଚିରେଇତା | ୧.୧ ମି.ଗ୍ରା |
| ଔଷଧ ସଂରକ୍ଷକ Chlorobutol I.P. | ୦.୫ % |

ସୂଚନା—

ସର୍ଦ୍ଦିର ଘନ ଘନ ଆକ୍ରମଣ ତୁଣ୍ଡିକେରି ପ୍ରଦାହ (ଟନ୍‌ସିଲାଇଟିସ୍) ଚର୍ମ-ରୋଗ ଯକୃତ ବିକାର ସ୍ଥଳରେ ପ୍ରଯୁଜ୍ୟ । ରୋଗ ପର ଦୁର୍ବଳତା ସ୍ଥଳରେ ଆରଓ-ବିନ୍ ଆଲବୋସାଗ ସହିତ ବ୍ୟବହାର କରାଯାଇ ପାରେ ।

ମାତ୍ରା—

ପୂର୍ଣ୍ଣ ବୟସ୍କଙ୍କ ପାଇଁ ଗୋଟିଏ ଲେଖାଏ ବଟିକା ଦିନକୁ ତିନିଥର ।

ଶିଶୁ ୧।୨ ବଟିକା-ଦିନକୁ ତିନିଥର

ଇଞ୍ଜେକସନ -

୧।୨ ଏମ. ଏଲ ଶିଶୁମାନଙ୍କପାଇଁ

୧ ଏମ୍. ଏଲ ପୂର୍ଣ୍ଣ ବୟସ୍କଙ୍କପାଇଁ

ଚବିଶ ଘଣ୍ଟା ଅନ୍ତରେରେ ଥରେ ଲେଖାଏଁ

ପ୍ୟାକିଂ—

ଦଶଟି ବଟିକା ଥିବା ଷ୍ଟ୍ରିପ୍

ଦୁଇଶହ ବଟିକା ଥିବା ଶିଶି

୧୦ × ୧ ଏମ.ଏଲ ଆମ୍ପୁଲ ବାକ୍ସ

୫୦ × ୧ ଏମ. ଏଲ. ଆମ୍ପୁଲସ୍‌ବାକ୍ସ

ଆଇକୁଇନ –

ମ୍ୟାଲେରିଆ ନାଶକ ବଟିକା ଓ ଇଞ୍ଜେକ୍ସନ

ଆୟୁର୍ବେଦ ଚିକିତ୍ସାରେ ବ୍ୟବହୃତ କେତେକ ଦ୍ରବ୍ୟ ସହିତ କୁଇନାଇନ୍‌ରେ ମିଶ୍ରଣରେ ପ୍ରସ୍ତୁତ ମ୍ୟାଲେରିୟା ନାଶକ ଯୋଗ । ଏହା କ୍ଷୁଧା ବୃଦ୍ଧିକରେ, ପାଚକ କ୍ରିୟାକୁ ଉଦ୍ଦୀପ୍ତକରେ ।

ଉପାଦାନ–

ପ୍ରତି ବଟିକାରେ ଥାଏ

| | |
|---|---|
| ଗୋଲମରିଚ | ୭.୬ ମି.ଗ୍ରା |
| ନିମ | ୧୮ ମି.ଗ୍ରା |
| ଚିରେଇତା | ୩୮ ମି.ଗ୍ରା |
| କଳାକଟୁକୀ | ୩.୮ ମି.ଗ୍ରା |
| କୁଇନାଇନ୍ ସଲଫେଟ୍ (ଆଇ.ପି | ୨୬.୬୬ ମି.ଗ୍ରା |

ପ୍ରତି ଏମ୍.ଏଲ୍.ରେ ଥାଏ

| | |
|---|---|
| ନିମ | ୦.୨୩ ମି.ଗ୍ରା |
| ଚିରେଇତା | ୧.୪ ମି.ଗ୍ରା |
| କୁଇନାଇନ (ବାଇହାଇଡ୍ରୋକ୍ଲୋରାଇଡ୍) | ୨୫ ମି.ଗ୍ରା |
| Preservative Chlorobutol I.P. | .୦.୫ ମି.ଗ୍ରା |

ଔଷଧର ଗୁଣଧର୍ମ–

ଗୋଲମରିଚ, ନିମ, ଚିରେଇତା, କଳାକଟୁକୀ ଜ୍ୱରନାଶକ ଦ୍ରବ୍ୟ ଭାବରେ ସୁପରିଚିତ ।

ଏଗୁଡ଼ିକର ଏକତ୍ର ସଂମିଶ୍ରଣ ହେତୁ ନିଶ୍ଚିତ ଜ୍ୱରଘ୍ନ ଗୁଣ ଦେଖାଇବା ସଙ୍ଗେ ସଙ୍ଗେ ପିତ୍ତାଶୟ କ୍ରିୟାକୁ ଠିକ୍ କରେ । ଏହା ପାଚକ ଓ ପୁଷ୍ଟିକାରକ ଭାବରେ କାର୍ଯ୍ୟ କରିଥାଏ । ଫ୍ଲେମିଂ ଓ ନାଦକର୍ଣ୍ଣୀଙ୍କ ମତ ଅନୁଯାୟୀ ଚିରେଇତାରେ ଜ୍ୱରଘ୍ନ ଓ ପାଚକ ଗୁଣ ସଙ୍ଗେ ଅତିସାର ବିରୋଧୀ ଗୁଣଥାଏ । ଯେଉଁମାନେ ବାରମ୍ବାର ମ୍ୟାଲେରିଆ ଭୋଗୁଛନ୍ତି କିମ୍ବା ସାଧାରଣ ମ୍ୟାଲେରିଆ ଆକ୍ରମଣ ସମୟରେ ଉପରୋକ୍ତ ଔଷଧର ଗୁଣଧର୍ମ ଏକାନ୍ତ ଆବଶ୍ୟକ । ମ୍ୟାଲେରିୟା ରୋଗରେ କୁଇନାଇନ୍‌ର ପ୍ରୟୋଗ ଏକ ନିଶ୍ଚିତ ପ୍ରତିକାର ଏ ବିଷୟରେ ଆଉ ସନ୍ଦେହର ଅବକାଶ ନାହିଁ । ଔଷଧ ପ୍ରସ୍ତୁତିର ସ୍ୱତନ୍ତ୍ର ପ୍ରଣାଳୀ ହେତୁ ଏହା ଅଳ୍ପ ପରିମାଣରେ ପ୍ରୟୋଗ କରା-ଗଲେ ମଧ୍ୟ ଆଶୁଫଳ ଦେଖାଏ ଅଥଚ କୁଇନାଇନ୍ ପ୍ରୟୋଗର କୌଣସି ଉପସର୍ଗ ଦେଖାଦିଏ ନାହିଁ ।

ପ୍ରୟୋଗ ସୂଚନା –

ଏହା ସମସ୍ତ ପ୍ରକାର ମ୍ୟାଲେରିଆ ଜ୍ୱର ଦୂର କରିଥାଏ ଏବଂ ମ୍ୟାଲେରିଆ ଆକ୍ରମଣ ଜନିତ ଅଗ୍ନିମାନ୍ଦ୍ୟ ଓ ଦୁର୍ବଳତା ଦୂର କରିଥାଏ ।

ମାତ୍ରା –

ପ୍ରତିଷେଧକ–ମ୍ୟାଲେରିୟା ହେଉଥିବା ଅଞ୍ଚଳରେ ଏଥିରୁ ଗୋଟିଏ ଲେଖାଏ ବଟିକା ପ୍ରତ୍ୟହିନ ସେବନ କଲେ ମ୍ୟାଲେରିୟା ଆକ୍ରମଣରୁ ରକ୍ଷା ମିଳେ ।

ପୂର୍ଣ୍ଣ ବୟସ୍କ–ପ୍ରତି ଘ୍ରିଘଣ୍ଟା ଅନ୍ତରରେ ଥରେ ଲେଖାଏଁ ସେବ୍ୟ । ଖାଲି ପେଟରେ ବ୍ୟବହାର କରିବା ଆବଶ୍ୟକ ।

ଶିଶୁ–୧।୨ରୁ ୧ଟି ବଟିକା, ପ୍ରତିଦିନ ।

ଆଇଓକୁଇନ୍ ୧.ଏମ.ଏଲ ଇଞ୍ଜେକ୍ସନ ଭାବରେ ମିଳେ ।

ପ୍ୟାକିଂ–

ଗୋଟିଏ ଷ୍ଟ୍ରିପ୍‌ରେ ଦଶଟି ଲେଖାଏଁ ବଟିକା ଥାଏ

ଗୋଟିଏ ଶିଶିରେ ୨୪୦ଟି ବଟିକା ଥାଏ ।

୧୦ x ୧ ଏମ୍. ଏମ. ଆଂପୁଲ ବାକ୍ସ

୫୦ x ୧. ଏମ୍. ଏଲ. ଆଂପୁଲ ବାକ୍ସ ମିଳିଥାଏ ।

କୋଫ୍‌ଲିନ୍ –

କଫନାଶକ ବଟିକା

ଆୟୁର୍ବେଦ ଚିକିତ୍ସାରେ ସୁପରିଚିତ କଫ ନାଶକ ଶ୍ୱସନିକା ପ୍ରଦାହ ଓ ଶ୍ୱାସନାଶକ ଦ୍ରବ୍ୟ ମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ–

ପ୍ରତି ବଟିକାରେ ଥାଏ

| | |
|---|---|
| ବାସଙ୍ଗ | ୯୦ ମି.ଗ୍ରା |
| ଦୁଧି | ୨୦ ମି.ଗ୍ରା |
| ହୁମା | ୬୦ ମି.ଗ୍ରା |
| ଯାଠୀମଧୁ | ୧୪୦ ମି.ଗ୍ରା |
| ମେରାଡ଼ୁ | ୨୦ ମି.ଗ୍ରା |
| ନାଲ | ୧୦ ମି.ଗ୍ରା |

ବାସଙ୍ଗ କଫ ଶାମକ ଓ କଫ ନିଃସାରକ ଭାବରେ ପ୍ରସିଦ୍ଧ । ଦୁଧି, କଫ ଓ ଶ୍ୱାସ ରୋଗରେ ହିତକର; ହୁମା, ଶ୍ୱାସ ନଳୀର ବିସ୍ତାରକ । ଯାଠୀମଧୁ ,

କଫ ଓ ଶ୍ବସନିକା ପ୍ରଦାହରେ ହିତକର । ନାଲ, ଶ୍ବାସ ଓ ଶ୍ବସନିକା ପ୍ରଦାହ ସ୍ଥଳରେ ବ୍ୟବହାର କରା ଯାଇଥାଏ ।

ପ୍ରୟୋଗ ସୂଚନା –

ଏହା ନୂତନ ଓ ପୁରାତନ କଫ ରୋଗରେ ହିତକର । ଏହା କଫକୁ ସରଳ କରେ ଏବଂ ଶ୍ବାସ ନଳୀର ସ୍ରାବକୁ ତରଳ କରେ । ଶ୍ବାସଜନିତ ଅଙ୍ଗ ଗ୍ରହ ଦୂର କରିବା ସଙ୍ଗେ ସଙ୍ଗେ ଶ୍ବାସ ରୋଗକୁ ଉପଶମ କରେ ।

ମାତ୍ରା –

ବୟସ୍କ–ଏକରୁ ଦୁଇଟି ବଟିକା ଦିନକୁ ତିନିଥର

ଶିଶୁ–୧।୪ରୁ ୧।୨ ବୟସ ଅନୁଯାୟୀ ବ୍ୟବହାର କରାଯାଇପାରେ,

ପ୍ୟାକିଂ –

ଦଶଟି ବଟିକା ଥିବା ଷ୍ଟ୍ରିପ୍

୨୫୦ଟି ବଟିକା ଥିବା ଶିଶି ।

## କାଇନୋ ଟୋମିନ୍ –

ଯକୃତ ବିକାର ଓ ଶ୍ଳେଷ୍ମିକ କାମଳ ରୋଗରେ ପ୍ରଯୁଜ୍ୟ । ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ ଯକୃତ ବିକାର ଓ ଶ୍ଳେଷ୍ମିକ କାମଳ ରୋଗ ନାଶକ ଦ୍ରବ୍ୟ ମାନଙ୍କର ମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ –

ପ୍ରତି ବଟିକାରେ ଥାଏ

| | |
|---|---|
| ରେଓ ଚିନି | ୨୦ ମି. ଗ୍ରା. |
| ଗନ୍ଧକ | ୪.୪ ମି. ଗ୍ରା |
| ବାଳହରିଦ୍ରା | ୧୦ ମି. ଗ୍ରା. |
| କଳାକଟୁକୀ | ୨୮ ମି. ଗ୍ରା. |
| ପୁରୁଣୀ | ୫୦ ମି: ଗ୍ରା. |
| ଭୃଙ୍ଗରାଜ | ୩୬ ମି. ଗ୍ରା. |

ଔଷଧର ଗୁଣଧର୍ମ –

ରେଓ ଚିନି ମୃଦୁ ବିରେଚକ, ଧାରକ ଓ ଅତିସାର ନାଶକ, ଗନ୍ଧକ ମୃଦୁ ବିରେଚକ, ପିତ୍ତସ୍ରାବକ ଓ ବର୍ଦ୍ଧକ । ବାଳହରିଦ୍ରା ଯକୃତ୍ ବୃଦ୍ଧି ନାଶକ, କଳାକଟୁକୀ ବିରେଚକ ଏବଂ ଅନ୍ୟ ଦ୍ରବ୍ୟମାନଙ୍କର ଗୁଣବର୍ଦ୍ଧକ । ପୁରୁଣୀ ମୂତ୍ରବର୍ଦ୍ଧକ ଏବଂ ଶୋଥ ଓ ଜଳୋଦର ନାଶକ । ଭୃଙ୍ଗରାଜ ଯକୃତ୍ ବିକାର ନାଶକ ଭାବରେ ସୁପ୍ରମାଣିତ । ଏହା ଶୁଦ୍ଧ ପିତ୍ତ ନିଃସାରଣ କରିବା ସଙ୍ଗେ ଯକୃତ୍‌ର ପୁଷ୍ଟିବିଧାନ କରାଇଥାଏ ।

ପ୍ରୟୋଗ ସୂଚନା -

ଏହା ଶୈଷ୍ମିକ କାମଳ ରୋଗ୍ ଦୂର କରିବା ସଙ୍ଗେ, ପିତ୍ତବାହିକା ପ୍ରଣାଳୀର କ୍ଷତନାଶକ କାର୍ଯ୍ୟ କରିଥାଏ ଏବଂ ସ୍ୱଳ୍ପ ସମୟ ମଧ୍ୟରେ କାମଳ ରୋଗ ଦୂର କରିଥାଏ ।

ମାତ୍ରା—

ବୟସ୍କ ଗୋଟିଏ ଲେଖାଏଁ ବଟିକା ଦିନକୁ ତିନିଥର ।

ଶିଶୁ ୧/୪ ବଟିକା ଦିନକୁ ତିନିଥର ।

ପ୍ୟାକିଂ -

ପଚ୍ଚଶଟି ବଟିକାଥିବା ଶିଶି (ଶର୍କରା ଲେପିତ)
ପାଞ୍ଚଶ ବଟିକା ଥିବା ଶିଶି (ଶର୍କରା ଲେପିତ)
ଏହା ମଧ୍ୟ ସୁବାସିତ ସିରପ୍ ଭାବରେ ମିଳିଥାଏ ।

ସିରପର ଉପାଦାନ -

ପ୍ରତି ଏମ୍. ଏଲ୍. (ଏକ ଗ୍ରହାଗ୍ରମଚରେ ଥାଏ)

| | |
|---|---|
| ରେଓଚିନି | ୫. ମି. ଗ୍ରା. |
| ବାଳହରିଦ୍ରା | ୨.୫. ମି. ଗ୍ରା |
| କଳାକଟୁକୀ | ୫. ମି. ଗ୍ରା |
| ପୁନର୍ଣ୍ଣବୀ | ୧୨.୫ ମି. ଗ୍ରା |
| ଭୃଙ୍ଗରାଜ | ୯ ମି. ଗ୍ରା. |

ମାତ୍ରା

ଥରକୁ ଦୁଇଗ୍ରମଚ ଦିନକୁ ତିନିଥର ।

ପ୍ୟାକିଂ—

ଶହେ ଏମ୍. ଏଲ୍. ଥିବା ଶିଶି ।

ମ୍ୟାଗନିକ୍—

ଅମ୍ଳ ତଥା ଅଙ୍ଗଗ୍ରହ ନାଶକ ।

ଅମ୍ଳ ବିରୋଧୀ ଓ ବେଲଡ଼ୋନା (ଧସ୍ତୁର)ର ମିଶ୍ରଣରେ ପ୍ରସ୍ତୁତ । ଏହା ଅନ୍ତକ୍ଷତ ଶୂଳ ଓ ଅମ୍ଳ ରୋଗରେ ହିତକର ।

ଉପାଦାନ-

ପ୍ରତି ବଟିକାରେ ଥାଏ

| | |
|---|---|
| ମ୍ୟାଗ୍ନେସିୟମ୍ ଟ୍ରିସିଲିକେଟ ଆଇ. ପି. | ୨୫୦ ମି. ଗ୍ରା. |
| ଡ୍ରାଇଏଡ଼ ଆଲମ ହାଇଡ୍ରକ୍ସ କିଏଲ୍. ଆଇ. ପି. | ୧୨୫ ମି. ଗ୍ରା. |
| ଏକ୍ସ୍ଟ୍ରାଟ ବେଲଡ଼ୋନା ଡ୍ରାଇ. ଆଇ. ପି. | ୫ ମି. ଗ୍ରା |

ଔଷଧର ଗୁଣଧର୍ମ -

ଅନ୍ତ୍ରକ୍ଷତ (ପେପ୍‌ଟିକ୍ ଅଲସର) ରୋଗରେ ଜଠରରେ ଅମ୍ଳ ସଞ୍ଚୟ ହେତୁ ଶୂଳ ବେଦନା ହୋଇଥାଏ । ଏଥିପାଇଁ ଅମ୍ଳନାଶକ ଦ୍ରବ୍ୟଗୁଡ଼ିକ ବ୍ୟବହାର କରା-ଯାଇଥାଏ । ଏହି ଦ୍ରବ୍ୟଗୁଡ଼ିକ କ୍ଷତନାଶକ ଭାବରେ କାର୍ଯ୍ୟ କରିଥାଏ । ଏଥିପାଇଁ ଯେଉଁ ଅମ୍ଳନାଶକ ଦ୍ରବ୍ୟ ପ୍ରୟୋଗ କରାଯାଇଥାଏ ତାହା ଜଠର ସଂଜାତ ଅମ୍ଳସ୍ରାବ ହେଉଥିବା ପର୍ଯ୍ୟନ୍ତ ଅମ୍ଳନାଶକ ଭାବରେ କାର୍ଯ୍ୟ କରିଥାଏ ।

ମ୍ୟାଗ୍‌ନେସିୟମ ଟ୍ରିସିଲିକେଟ ଏବଂ ଆଲୁମିନିୟମ ହାଇଡ୍ରୋକ୍‌ସାଇଡ଼ର ଅମ୍ଳତା ଶାମକ ଗୁଣ ବହୁ ସମୟଧରି ରହେ ଏଣୁ ଏହା ଫଳପ୍ରଦ ଅମ୍ଳବିରୋଧୀ ଭାବରେ କାର୍ଯ୍ୟ କରେ । ଏହି ଲବଣ ଦୁଇଟି ଶରୀରରେ ମିଶେ ନାହିଁ—ଏଣୁ କୌଣସି ଉପସର୍ଗ ସୃଷ୍ଟି କରେ ନାହିଁ । ବେଲଡ଼ୋନା ଏକ୍‌ସ୍‌ଟ୍ରାକ୍‌ଟ ଦଶମ କରୋଟିକା ସ୍ନାୟୁ ବା ଭେଗସ୍ ନର୍ଭର କାର୍ଯ୍ୟକୁ ନିରୋଧ କରେ ଏବଂ ଅମ୍ଳ ନିଃସରଣକୁ ବାଧା ଦିଏ । ଏଣୁ ଅଙ୍ଗଗ୍ରହ ବନ୍ଦହେବା ସଙ୍ଗେ ଯନ୍ତ୍ରଣା କମିଯାଏ ।

ପ୍ରୟୋଗ ସୂଚନା -

ଅନ୍ତ୍ରକ୍ଷତ ଜନିତ ଶୂଳ, ଅମ୍ଳାଧିକ୍ୟ ଓ ଅମ୍ଳ ପ୍ରଧାନ ଅଗ୍ନିମାନ୍ଦ୍ୟ ରୋଗରେ ପ୍ରଯୁଜ୍ୟ ।

ମାତ୍ରା—

ପୂର୍ଣ୍ଣ ବୟସ୍କ ଥରକେ ଦୁଇଟି ବଟିକା ।

ଖାଇବାର କୋଡ଼ିଏ ପଚିଶ ମିନିଟ ପୂର୍ବରୁ ବଟିକା ଦୁଇଟିକୁ ଚୋବେଇକରି ଗିଳିଦେବାକୁ ହେବ । ଯଦି ଖାଇବା ମଧ୍ୟରେ ଶୂଳ ବେଦନା ହୁଏ, ତାହାହେଲେ ଆଉ ଗୋଟିଏ ଦୁଇଟି ବଟିକା ଚୋଷିବା ଆବଶ୍ୟକ ।

ଶିଶୁ ଥରକୁ ଗୋଟିଏ ବଟିକା ।

ପ୍ୟାକିଂ -

ଗୋଟିଏ ଷ୍ଟ୍ରିପ୍‌ରେ ଦଶଟି ବଟିକା ଥାଏ ।

ଗୋଟିଏ ଟିଣରେ ୫୦୦ ବଟିକା ଥାଏ ।

ମେଡ଼ିଟାବ -

କଫ ନାଶକ ବଟିକା

ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ କେତେକ କଫନାଶକ ଦ୍ରବ୍ୟର ସଂମି-ଶ୍ରଣରେ ପ୍ରସ୍ତୁତ । ଏଥିରେ କଉଡ଼ିଭସ୍ମ ଥିବାରୁ ପୁରୁଣା କଫ ରୋଗ ଦୂର କରିବା ସଙ୍ଗେ ସଙ୍ଗେ ଶରୀରରେ ପୁଷ୍ଟିବିଧାନ କରେ ।

ପ୍ରତ୍ୟେକ ବଟିକାରେ ଥାଏ—

| ବାସଙ୍ଗ | ୬୦ ମି. ଗ୍ରା. |
|---|---|

| | |
|---|---|
| ରସୁଣ | ୦.୭ ମି. ଗ୍ରା. |
| ନାଲ | ୪୮ ମି. ଗ୍ରା. |
| ଦୁଧି | ୨୬ ମି. ଗ୍ରା. |
| କପର୍ଦ୍ଦିକା ଭସ୍ମ | ୭ ମି. ଗ୍ରା |

ଔଷଧର ଗୁଣଧର୍ମ–

ବାସଙ୍ଗ, ନାଲ, ଦୁଧି କଫକୁ ସରଳ କରି ନିଃସାରଣ କରିବାରେ ସାହାଯ୍ୟ କରିଥାଏ (କେଫୋଲିନା ରୋଗର ପ୍ରାରମ୍ଭ ଅବସ୍ଥାରେ ପ୍ରଯୁଜ୍ୟ) ରସୁଣ କଫ୍ ନିଃସାରକ ଜୀବାଣୁନାଶକ, ସ୍ୱେଦକାରକ, ମୂତ୍ରବର୍ଦ୍ଧକ । ଏହା ଶ୍ୱସନିକା ପ୍ରଦାହ ଓ ଫୁସଫୁସ ଜନିତ ଅନ୍ୟାନ୍ୟ ରୋଗରେ ମଧ୍ୟ ହିତକର । କଉଡ଼ି ଭସ୍ମ ପୁରୁଣା କଫଜନିତ ରୋଗରେ କଫ ଉତ୍ପାଦନ ଓ ନିଃସାରଣରେ ସାହାଯ୍ୟ କରିବା ସଙ୍ଗେ ଶାରୀରିକ ପୁଷ୍ଟିବିଧାନ କରିଥାଏ । ଏହା ଯକ୍ଷ୍ମା ପ୍ରଭୃତି କ୍ଷୟ ରୋଗରେ ମଧ୍ୟ ପ୍ରୟୋଗ କରାଯାଇଥାଏ ।

ପ୍ରୟୋଗ ସୂଚନା–

ପୁରୁଣା କାଶ ରୋଗ, ଯକ୍ଷ୍ମା ରୋଗର କଫ ଶ୍ୱାସ ରୋଗର କଫ ଓ କାଶ ଦୂର କରିବାରେ ସାହାଯ୍ୟ କରିଥାଏ ।

ମାତ୍ରା–

୨ରୁ ୧ଟି ବଟିକା–ଦୁଧ ବା ମହୁ ସହିତ ଦିନକୁ ଦୁଇଥରରୁ ତିନିଥର ।

ପ୍ୟାକିଂ –

କୋଡ଼ିଏଟି ବଟିକା ଥିବା ଶିଶି ।

ବି:ଦ୍ର:–

କଫ ଓ କାଶ ରୋଗର ପ୍ରାରମ୍ଭ ଅବସ୍ଥାରେ କଫୋଲିନ୍ ପ୍ରଯୁଜ୍ୟ । ଛାତି ବଥା ଓ ଦରଜସ୍ଥଳରେ ତାନ୍‌କିନ୍ ଏବଂ ତେସମା ଅଦଳ ବଦଳ କରି ବ୍ୟବହାର କରାଯାଇଥାଏ । କଫକୁ ସରଳ କରିବାପାଇଁ ଛାତିରେ ଟେସଲ ଏବଂ ରୁବ୍‌ଜନ୍ ମାଲିସ୍ କଲେ ଅଧିକ ସୁଫଳ ମିଳେ ।

ଔଷଧୀୟ ଦନ୍ତ ସଂସ୍କାର ଚୂର୍ଣ୍ଣ -

ଦନ୍ତାର୍ଶ, ଦାନ୍ତମାଢ଼ିର ଫୁଲା, ଦାନ୍ତ ମୂଳରୁ ପୂଜ ବାହାରିବା ସ୍ଥଳରେ ପ୍ରଯୁଜ୍ୟ ।

ସୂଚନା–

ଏହି ଚୂର୍ଣ୍ଣରୁ କିଛି ପରିମାଣ ନେଇ ଆଙ୍ଗୁଠିରେ ଦାନ୍ତ ମାଢ଼ିର ଭିତର ଓ ମବାହାରେ ଉତ୍ତରୂପେ ଘଷନ୍ତୁ । ଔଷଧ ଘଷିବା ୮।୧୦ ମିନିଟ ପର୍ଯ୍ୟନ୍ତ ପାଟିଭିତର ଧୋଇବେ ନାହିଁ । ତାପ୍‌ରେ ଉତ୍ତମ ରୂଆଥିବା ଦାନ୍ତକାଠି ବା ବ୍ରସରେ ଦାନ୍ତମଳ ଘଷି ଧୋଇ ନିଅନ୍ତୁ ।

ସକାଳେ ବିଛଣାରୁ ଉଠିବା ପର ଓ ରାତିରେ ଶୋଇବା ପୂର୍ବରୁ ଏହା ବ୍ୟବ୍ହାର କରାଯାଇଥାଏ ।

ଏହାକୁ ନିୟମିତ ବ୍ୟବହାର କଲେ ଦାନ୍ତାର୍ଶ (ଦାନ୍ତର ପାଇଓରିୟା) ଭଲ ହୋଇଥାଏ । ବେଶି ପୂଜ ହେଉଥିଲେ ଦାନ୍ତମାର୍ଢ଼ିରେ ଏଣ୍ଟ୍ରପସ ଲଗାଇବା ଭଲ । ସକାଳେ ଓ ରାତିରେ ଶୋଇବା ପୂର୍ବରୁ ଦାନ୍ତଘଷା ଚୂର୍ଣ୍ଣରେ ଦାନ୍ତ ଓ ଦାନ୍ତମୂଳ ସଫା କରିବା ପରେ ଏଣ୍ଟ୍ରପସ୍ ବ୍ୟବହାର କରିବା ଆବଶ୍ୟକ ।

ପ୍ୟାକିଂ –

ପଗ୍ଚଶ ଗ୍ରାମ ଥିବା ଶିଶି ।

ମରସିନା –

ଡାଇବେଟିସ୍ (ମଧୁମେହ) ନାଶକ ବଟିକା ।

ଡାଇବେଟିସ୍ ରୋଗରେ ସୁପରୀକ୍ଷିତ କେତେକ ଭାରତୀୟ ବନସ୍ପତିର ମିଶ୍ରଣରେ ପ୍ରସ୍ତୁତ । ଏହା ଖାଇବା ଔଷଧ ଭାବରେ ବ୍ୟବହାର କରାଯାଉଥିବାରୁ ବ୍ୟବହାର ପକ୍ଷରେ ସୁବିଧାଜନକ ।

ଉପାଦାନ –

ପ୍ରତି ବଟିକାରେ ଥାଏ

| | |
|---|---|
| କୁଆମଇତା | ୪୮ ମି. ଗ୍ରା. |
| ଜାମୁ ମଞ୍ଜି | ୪୧ ମି. ଗ୍ରା. |
| ତରଓ୍ବାରା | ୪୧ ମି. ଗ୍ରା. |
| ଗୁଳୁଚୀ | ୩୨ ମି. ଗ୍ରା. |
| କଲରା | ୫୨ ମି. ଗ୍ରା. |

ଔଷଧୀୟ ଗୁଣଧର୍ମ –

ଉପରୋକ୍ତ ବନସ୍ପତିଗୁଡ଼ିକ ମଧ୍ୟମ ବୟସ୍କ ଲୋକମାନଙ୍କର ମଧୁମେହ ନିରାକରଣରେ ଯେ ନିଶ୍ଚିତ କାର୍ଯ୍ୟକାରୀ ଏହା ସୁପ୍ରମାଣିତ । ଶ୍ୱେତସାର ଜାତୀୟ ଖାଦ୍ୟ ଖାଇଲେ ମଧ୍ୟ ଏହା ଦେହରେ ଚଳାଇନିଏ । ଏହି ମିଶ୍ରଣର କୌଣସି ପ୍ରତିକ୍ରିୟା ଏପର୍ଯ୍ୟନ୍ତ ଦେଖାଯାଇ ନାହିଁ । ଏଗୁଡ଼ିକକୁ ଏକାଠି ମିଶାଇ ବ୍ୟବହାର କରିବାଦ୍ୱାରା ଏହା ଅଧିକ ଫଳପ୍ରଦ ବୋଲି ପ୍ରମାଣିତ ।

ପ୍ରୟୋଗ ସୂଚନା –

ଏହା ମଧ୍ୟ ଯକୃତ କ୍ରିୟାର ଉନ୍ନତିସାଧନ କରିଥାଏ ଏବଂ ଶ୍ରାନ୍ତି ଦୂର କରିଥାଏ ।

ମାତ୍ରା –

ପ୍ରଧାନ ଖାଦ୍ୟ ଖାଇବାର ଅଧଘଣ୍ଟା ପୂର୍ବରୁ ଦୁଇରୁ ଚାରିଟି ବଟିକା ଥରକେ ସେବ୍ୟ । ପ୍ରାଥମିକ ଅବସ୍ଥାରେ ଚାରିଟି ବଟିକା ଖାଇବା ଆବଶ୍ୟକ । ମୂତ୍ରରୁ ଶର୍କରା

ପରିମାଣ କମିବା ସଙ୍ଗେ ସଙ୍ଗେ ଔଷଧର ମାତ୍ରା କମାଇବା ଆବଶ୍ୟକ । ବ୍ୟକ୍ତିବିଶେଷର ଶର୍କରା ପରିମାଣ ଅନୁଯାୟୀ ଔଷଧର ମାତ୍ରା କମ୍ ବେଶି କରାଯାଇପାରେ ।

ମଧୁମେହର ପଥ୍ୟାପଥ୍ୟ ବ୍ୟବସ୍ଥା ଠିକ୍ ରଖିବାକୁ ହେବ । ମଝିରେ ମଝିରେ ମୂତ ଓ ରକ୍ତ ପରୀକ୍ଷା କରି ଶର୍କରା ପରିମାଣ ଲକ୍ଷ୍ୟ ରଖିବାକୁ ଏବଂ ତଦନୁଯାୟୀ ଔଷଧ ମାତ୍ରା କମ୍ ବେଶି କରିବାକୁ ହେବ ।

ଇନ୍‌ସୋଲିନ୍ ସଙ୍ଗେ ଏହାକୁ ବ୍ୟବହାର କରାଯାଇପାରେ । ଏହା ଦ୍ୱାରା ଇନ୍‌ସୋଲିନ୍ ପରିମାଣ କମାଇବା ସହଜ ହୁଏ ଏବଂ ଇନ୍‌ସୋଲିନ୍ ବଦଳରେ ଏହାକୁ ବ୍ୟବହାର କରାଯାଇପାରେ ।

ଶିଶୁ ମଧୁମେହ ରୋଗରେ ଏହା ବ୍ୟବହାର କରିବା ଅନୁଚିତ । ମଧୁମେହ ଜନିତ ପଠା ଘା, ଓ ରକ୍ତରେ ଶର୍କରା ଅଧିକ୍ୟ ସ୍ଥଳରେ ପ୍ରଯୁଜ୍ୟ ନୁହେଁ ।

ପ୍ୟାକିଂ –

ପ୍ରତି ଶିଶିରେ ଶହେଟି ବଟିକା ଥାଏ ।

ନର୍ଭୋପ୍ଲେକ୍ସ –

ଶାମକ ଇଞ୍ଜେକ୍‌ସନ

ସ୍ନାୟବିକ ଉତ୍ତେଜନା, ମାନସିକ ବିକ୍ଷିପ୍ତି ସ୍ଥଳରେ ଏହା ଉତ୍କୃଷ୍ଟ ସ୍ନାୟୁଶାମକ ଭାବରେ କାର୍ଯ୍ୟ କରିଥାଏ ।

ଉପାଦାନ–

ପ୍ରତି ଏମ୍. ଏଲ.ରେ ଥାଏ

| | | |
|---|---|---|
| ବାଳତଗର | ( Valeriana Wallichi) | ୦.୦୧ ମି. ଗ୍ରା |
| ମେଥି | | ୦.୬ ମି. ଗ୍ରା. |
| ଅଶ୍ୱଗନ୍ଧା | | ୦. ୫ ମି. ଗ୍ରା |
| ଔଷଧ ସଂରକ୍ଷକ | Chlorobutol I.P. | .୦.୫ |

ବାଳତଗର ସ୍ନାୟୁ କେନ୍ଦ୍ରରେ ଅବସାଦନ ସୃଷ୍ଟିକରେ, ଅପସ୍ମାର ଓ ଯୋଷାପସ୍ମାର କ୍ଷେତ୍ରରେ ଉତ୍ତମ ଫଳ ଦେଖାଇଥାଏ । ଅଶ୍ୱଗନ୍ଧା ଶାମକ ତଥା ମୂତ୍ରବର୍ଦ୍ଧକ ଭାବରେ ପ୍ରମାଣିତ ।

ପ୍ରୟୋଗ ସୂଚନା

**ସ୍ନାୟ**ବିକ ଉତ୍ତେଜନା, ବିକ୍ଷିପ୍ତି, ଅପସ୍ମାର, ଭାବାତ୍ମକ ଅସ୍ଥିରତା, ସ୍ନାୟବିକ ଦୁର୍ବଳତା ସ୍ଥଳରେ ଏହା ପ୍ରଯୁଜ୍ୟ । ସ୍ନାୟବିକ ପୀଡ଼ା ସ୍ଥଳରେ ଏହା ଶାମକ ଔଷଧ ଭାବରେ ବ୍ୟବହାର କରାଯାଇପାରେ । ଯେଉଁସ୍ଥଳରେ କୌଣସି ଆଶୟିକ ପୀଡ଼ା ହେତୁ ରୋଗୀ ଅସ୍ତବ୍ୟସ୍ତ ହେଉଥାଏ ସେ ସ୍ଥଳରେ ଏହାର ପ୍ରୟୋଗ ବିଶେଷ ସୁଫଳ ଦେଖାଇଥାଏ ।

ମାତ୍ରା—

ପେଶୀ ମାଧ୍ୟମରେ ଦିନକୁ ଏକ ଏମ୍. ଏଲ. ପରିମାଣରେ ବ୍ୟବହାର କରାଯାଇଥାଏ । ରୋଗୀର ଅବସ୍ଥାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏହା ଚାରିଦିନ ଅନ୍ତରରେ ଥରେ ଲେଖାଏଁ ବ୍ୟବହାର କରିବାକୁ ହୁଏ ।

ପ୍ୟାକିଂ -

ଗୋଟିଏ ବାକ୍‌ସରେ ଦଶଟି ଆମ୍ପୁଲ ଥାଏ ପ୍ରତି ଆମ୍ପୁଲ ଏକ ଏମ. ଏଲ. ।

ନେଭସ

ସ୍ନାୟବିକ ଦୁର୍ବଳତା ଓ ମାନସିକ ଅସ୍ଥିରତା ନାଶକ ବଟିକା ।

ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ ସ୍ନାୟବିକ ଦୁର୍ବଳତା ନାଶକ ତଥା ସ୍ନାୟୁ ସମ୍ପର୍କୀୟ ବିଭିନ୍ନ ବିକାରସ୍ଥଳରେ ଏହା ପ୍ରଯୁଜ୍ୟ ।

ଉପାଦାନ—

ପ୍ରତି ବଟିକାରେ ଥାଏ ।

| | |
|---|---|
| ଖୁରାସାନି ଜୁଆଣ | ୨୪ ମି. ଗ୍ରା |
| ଅଶ୍ୱଗନ୍ଧା | ୬୪ ମି. ଗ୍ରା. |
| ଧାତୁରା | ୪ ମି. ଗ୍ରା. |
| ଜାଇଫଳ | ୦.୮ ମି. ଗ୍ରା. |

ଔଷଧର ଗୁଣଧର୍ମ—

ଖୁରାସାନି ଜୁଆଣି ପେଟକାମୁଡ଼ା ଦୂରକରେ, ପାକସ୍ଥଳୀ, ପେଶୀ ଓ ମୂତ୍ର ପ୍ରଜନନ ପ୍ରକ୍ରିୟାରେ ଜନ୍ମିଥିବା ଯେ କୌଣସି ଶୂଳ, ବେଦନା, ଅଙ୍ଗଗ୍ରହ ଦୂର କରିବାରେ ସାହାଯ୍ୟକାରୀ । ଅଶ୍ୱଗନ୍ଧା ସ୍ନାୟୁ କେନ୍ଦ୍ରର ଯାବତୀୟ ଉତ୍ତେଜନା ହ୍ରାସ କରିବା ସଙ୍ଗେ ମୂତ୍ର ପ୍ରଜନନ ଓ ମୂତ୍ରସ୍ରାବକୁ ସରଳକରେ । ଧାତୁରା ଶାମକ, ଜଠର ଅମ୍ଳତା ନାଶକ, ବସ୍ତିଗତ ଓ ଅନ୍ତ୍ରଗତ ଶୂଳ ଦୂର କରିବାରେ ସହାୟକ ହୋଇଥାଏ ।

ପ୍ରୟୋଗ ସୂଚନା -

ସ୍ନାୟବିକ ଦୁର୍ବଳତା ଜନିତ ଯାବତୀୟ ବିକାର, ମାନସିକ ଚଞ୍ଚଳତା, ଘନ ଘନ ପରିସ୍ରାର ବେଗ, ପେଟରେ ଶୂଳ ବେଦନା, କମ୍ପ ଦୂର କରିଥାଏ । ଶାରୀରିକ ଓ ମାନସିକ ଅତ୍ୟଧିକ ଶ୍ରାନ୍ତି ଜନିତ ସ୍ନାୟବିକ ଦୁର୍ବଳତା, ଓଜହୀନତା, ଶୁକ୍ରତାରଲ୍ୟ, ଅସ୍ୱାଭାବିକ ଯୌନ କାମନା, ଅତ୍ୟଧିକ ଝାଳବହିବା ପ୍ରଭୃତି ସ୍ଥଳରେ ଏହା ବିଶେଷ କାମ କରିଥାଏ । ଏହା ମାନସିକ କୌଣସି ବିଶୃଂଖଳା ବା ଉପସର୍ଗ ସୃଷ୍ଟିକରେ ନାହିଁ ।

ମାତ୍ରା—

ପୂର୍ଣ୍ଣ ବୟସ୍କଙ୍କୁ ଗୋଟିଏ ବଟିକା ତିନି ଚାରି ଘଣ୍ଟା ଅନ୍ତରରେ ସେବ୍ୟ । ଏହା ଦୁଧ ଅନୁପାନରେ ଖାଇଲେ ଭଲ କାମ ଦିଏ ।

ଶିଶୁ ½ ରୁ ¼ ବଟିକା ପ୍ରତି ଗ୍ରରି ଘଣ୍ଟା ଅନ୍ତରରେ ଥରେ ଲେଖାଏଁ ।

ପ୍ୟାକିଂ—

୬୦ ବଟିକା ଥିବା ଶିଶି ।

ଓଲେସିନ୍ -

ବାହ୍ୟିକ ପ୍ରୟୋଗ ପାଇଁ ପ୍ରସ୍ତୁତ ତୈଳ ।

ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ କେତେକ ବୃକ୍ଷଲତାର ନିର୍ଯ୍ୟାସ ତୈଳ ସଂଯୋଗରେ ପ୍ରସ୍ତୁତ କରାଯାଇଅଛି । ଏହା ସ୍ନାୟୁ କେନ୍ଦ୍ର ଉପରେ ବିଶେଷ କାର୍ଯ୍ୟ କରେ ।

ଉପାଦାନ—

ପ୍ରତି ଶହେ ଗ୍ରାମରେ ଥାଏ

| | |
|---|---|
| ଗିଲ (ଲେଟାକରଞ୍ଜ) | ୨ ଗ୍ରାମ |
| ଭୃଙ୍ଗରାଜ | ୨ ଗ୍ରାମ |
| ନିମ | ୨ ଗ୍ରାମ |
| ବନସ୍ପତି ତୈଳ | Q.S. |

ଔଷଧର ଗୁଣଧର୍ମ—

ଉପରୋକ୍ତ ବୃକ୍ଷଲତାର ନିର୍ଯାସ ଓ ବନସ୍ପତି ତୈଳର ସଂଯୋଗରେ ପ୍ରସ୍ତୁତ । ଏହାକୁ ଧୀରେ ଧୀରେ ମାଲିସ୍‌କଲେ ଏହା ସ୍ନାୟୁ କେନ୍ଦ୍ର, ପେଶୀ ଓ ଚର୍ମ ଉପରେ ଶାମକ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ସେମାନଙ୍କର ପୁଷ୍ଟିବିଧାନ କରିଥାଏ । ସ୍ନାୟୁମଣ୍ଡଳୀର ଉତ୍ତେଜନା ହ୍ରାସ କରେ ଏବଂ ସୁସୁପ୍ତି ଆଣିଦିଏ ।

ଯେ କୌଣସି ବନସ୍ପତି ତୈଳ ପାଞ୍ଚ ଦଶ ଭାଗ ସହିତ ଏଥିରୁ ଏକ ଭାଗ ମିଶାଇ ସ୍ନାନ ପୂର୍ବରୁ ମାଲିସ କରାଯାଇ ପାରେ ।

ଏହାକୁ କେଶ ତୈଳ ଭାବରେ ବ୍ୟବହାର କରାଯାଇପାରେ । ଏହି ତୈଳରୁ କିଛି ନେଇ ଆଙ୍ଗୁଠି ସାହାଯ୍ୟରେ ବାଳମୂଳରେ ଧୀରେ ଧୀରେ ଓ ଭଲକରି ମାଲିସ୍ କରିବାକୁ ହେବ । ଏହାକୁ ଶୋଇବାର ଅଧଘଣ୍ଟା ପୂର୍ବରୁ ଲଗାଇଲେ ଯେ କୌଣସି ମୁଣ୍ଡବ୍ୟଥା, ମୁଣ୍ଡ ଘୁରାଇବା ଦୂର କରିବା ସଙ୍ଗେ ସଙ୍ଗେ ସୁସୁପ୍ତି ଆଣିଦିଏ ।

ଏହା କେଶର ପୁଷ୍ଟିବିଧାନ କରେ—ଏଣୁ ଏହାକୁ ପ୍ରତି ଦିନ କେଶ ତୈଳ ଭାବରେ ବ୍ୟବହାର କରାଯାଇପାରେ ।

ଓଲସିନ୍‌କୁ ଅପସ୍ମାର ଯୋଷାପସ୍ମାର, ସ୍ନାୟବିକ ଦୁର୍ବଳତାରେ ବ୍ୟବହାର କରାଯାଇପାରେ । କାନ ଭିତରେ ପୂଜ ପାଣି ନ ଥିଲେ, ଏଥିରୁ ଦୁଇ ତିନି ବୁନ୍ଦା କାନରେ ପକାଇଲେ ମଧ୍ୟ ସ୍ନାୟୁ କେନ୍ଦ୍ର ପାଇଁ କାମ କରେ ।

ପ୍ୟାକିଂ—

୩୨ ଏମ୍. ଏଲ.

୧୨୫ ଏମ୍. ଏଲ.

ଫେନୋକାଲସିନ -

ବେଦନାନାଶକ, ଜ୍ୱରଘ୍ନ, ଆମବାତ ନାଶକ ।

କେତେକ ଆୟୁର୍ବେଦୀୟ ଓ ଏଲୋପାଥିକ୍ ବେଦନାହାରକ ଓ ଜ୍ୱରଘ୍ନ ଦ୍ରବ୍ୟର ମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ—

ପ୍ରତି ବଟିକାରେ ଥାଏ ।

| | |
|---|---|
| ସାଲିସିଲମାଇଡ୍ ଏମ୍. ଏଫ. | ୨୦୦ ମି. ଗ୍ରା. |
| କୁଇନାଇନ୍ ସଲ୍‌ଫେଟ I. P | ୮ ମି. ଗ୍ରା. |
| ଯବକ୍ଷାର | ୪.୮. ମି. ଗ୍ରା. |
| ଧାତୁରା | ୧୦ ମି. ଗ୍ରା. |

ଔଷଧର ଗୁଣଧର୍ମ -

ସାଲିସିଲାମାଇଡ୍ ଆସପିରିନ୍ ପରି ବେଦନାହାରକ, ଜ୍ୱରଘ୍ନ, ପ୍ରଦାହ ନାଶକ । ଅଧିକନ୍ତୁ ଏହା ନିରୁପଦ୍ରବ । ଏଥିପର ପାକସ୍ଥଳୀରେ କୌଣସି ବିକାର ଜନ୍ମେ ନାହିଁ । ଅଳ୍ପ ମାତ୍ରାରେ କୁଇନାଇନ୍ ବ୍ୟବହାରେ କରିବାଦ୍ୱାରା ଏହା ସର୍ଦ୍ଦି, ମୁଣ୍ଡବ୍ୟଥା ଓ ବେଦନାହାରକ ଭାବରେ କାର୍ଯ୍ୟ କରିଥାଏ । ଯବକ୍ଷାର ଜଠରାଗ୍ନି ଜନିତ ଅମ୍ଳତା ନାଶକରେ ଏବଂ ପୋଟାସିୟମ କ୍ଷୟ ପୂରଣ କରେ । ଧାତରା ସ୍ନାୟୁ କେନ୍ଦ୍ରର ଶାମକ ଏହା ଅମ୍ଳାଧିକ୍ୟକୁ ନିୟନ୍ତ୍ରଣ କରେ ଏବଂ ତଜ୍ଜନିତ ଶଳ ଓ ଅଙ୍ଗଗ୍ରହ ଦୂରକରେ

ପ୍ରୟୋଗ ସୂଚନା -

ଶିରଃ ଶୂଳ, ପେଶୀଶୂଳ, ଆମବାତ, ତନ୍ତୁପ୍ରଦାହ, ସନ୍ଧିପ୍ରଦାହ ସାଧାରଣ ସର୍ଦ୍ଦି, ଶ୍ଳୈଷ୍ମିକ ଜ୍ୱର, ଇନ୍‌ଫ୍ଲୁଏନ୍‌ଜା ନାଶକ ।

ସ୍ନାୟବିକ ଦୁର୍ବଳତା ପ୍ରପୀଡ଼ିତ ଓ ଅସ୍ଥିରଚେତା ରୋଗୀମାନଙ୍କୁ ଏହି ଔଷଧ ସହିତ ଭାଇଟାଲଏସେନ୍‌ସ ଦେଲେ ସୁଫଳ ମିଳେ । ଏ ସ୍ଥଳରେ ଫେନୋକାଲସିନ୍ ବଦଳରେ ଡେସିଲ ମଧ୍ୟ ଶୀଘ୍ର ଉପକାର ଦର୍ଶାଇଥାଏ ।

ମାତ୍ରା—

ଥରକେ ଗୋଟିଏ ବଟିକା, ଦିନକୁ ତିନିଥର ପୂର୍ଣ୍ଣ ବୟସ୍କମାନଙ୍କ ପାଇଁ ।

ଶିଶୁମାନଙ୍କୁ ½ ରୁ ୧ଟି ବଟିକା ଦିନକୁ ତିନିଥର ଦିଆ ଯାଇପାରେ ।

ପ୍ୟାକିଂ -

ଦଶଟି ବଟିକାଥିବା ଦଶଟି ଷ୍ଟ୍ରିପ୍‌ଥିବା ବାକ୍‌ସ

୧୨୦ଟି ବଟିକା ଥିବା ଶିଶି ।

ପିପାରିଡ୍ -

କର୍ମିନାଶକ ବଟିକା

ଲମ୍ବା କୃମି, ଦଶୀପୋକ ମାରିବାପାଇଁ ଫଳପ୍ରଦ ଓ ନିରୁପଦ୍ରବ ଏକ 'ପାନେ' ସେବ୍ୟ ବଟିକା ।

ଉପାଦାନ–

ପ୍ରତି ବଟିକାରେ ଥାଏ ।

ପ୍ରାଇପେରାଇଜିନ୍ ଫସ୍‌ଫେଟ ବି.ପି. Piperazinephosphate B.P. ୨୫୦ମି.ଗ୍ରା.
ସୁନାମୁଖୀ ପତ୍ର ୧୦ମି.ଗ୍ରା.

ଔଷଧର ଗୁଣଧର୍ମ –

ମାତ୍ର ଗୋଟିଏ ପାନ ପାଇପରାଇଜିନ୍ ବ୍ୟବହାର କରିବାଦ୍ୱାରା ପେଟ ଭିତରେ ଥିବା ଲମ୍ବା କୃମିଗୁଡ଼ିକ ନିଷ୍କ୍ରିୟ ହୋଇପଡ଼ନ୍ତି, ଅନ୍ତମଣ୍ଡଳର ସ୍ୱଭାବିକ ଆକୁଞ୍ଚନ ପ୍ରସାରଣ ଦ୍ୱାରା ସେଗୁଡ଼ିକ ପେଟ ଭିତରୁ ବାହାରି ଆସନ୍ତି, ଔଷଧ ଗୁଣକାରିତା ବିଷୟରେ ନିଶ୍ଚିତ ହେବା ପାଇଁ ଏଥିରେ ସୁନାମୁଖୀ ଦିଆଯାଇଛି ସିନା, ଅନ୍ତମଣ୍ଡଳୀରୁ ସେହି ନିଷ୍କ୍ରିୟ କୃମିଗୁଡ଼ିକ ବାହାର କରି ଦେବାରେ ସହାୟକ ହୋଇଥାଏ ।

ପାଇପେରାଇଜିନ ଦଶିପୋକ ଦୂର କରିବାରେ ମଧ୍ୟ ଫଳପ୍ରଦ । ମାତ୍ର ଏଥିପାଇଁ ଟିକେ ବେଶୀ ସମୟ ଔଷଧ ବ୍ୟବହାର କରିବାକୁ ହୋଇଥାଏ । ପାଇ-ପେରାଇଜିନ୍ ସହିତ ସୁନାମୁଖୀ ପତ୍ରର ମିଶ୍ରଣ ହେତୁ ଏହା ଅଧିକ ଫଳପ୍ରଦ ହୋଇଥାଏ । ଶତକଡ଼ା ୯୭ ଘଟଣାରେ ଏହା ପ୍ରମାଣିତ ।

ପାଇପେରାଇଜିନ୍‌ର ବ୍ୟବହାର ସର୍ବଥା ନିରାପଦ । ପ୍ରବଳ କୃମି ଅବସ୍ଥାରେ ଏହା ମଧ୍ୟ ଫଳଦାୟକ । ଏହା ବ୍ୟବହାର କରିବା ଦ୍ୱାରା କୃମିମାନଙ୍କର କୌଣସି ଉପଦ୍ରବ ବୃଦ୍ଧି ହୁଏ ନାହିଁ– କେବଳ ସେମାନଙ୍କୁ ନିଷ୍କ୍ରିୟ କରିଦିଆଯାଇଥାଏ । ସୁନାମୁଖୀ ହେଉଛି ଏକ ନିରାପଦ ବିରେଚକ ଦ୍ରବ୍ୟ । ଏହା ସରଳ ଭାବରେ ବିରେଚନ କରାଇଥାଏ । ଏହା ବ୍ୟବହାର କରିବାଦ୍ୱାରା ପେଟକାମୁଡ଼ିବା ହୁଏ ନାହିଁ ।

ମାତ୍ରା–

ପୂର୍ଣ୍ଣ ବୟସ୍କମାନଙ୍କ ପାଇଁ ଦୁଇଟିରୁ ଚାରିଟା ବଟିକା ଶୋଇବା ସମୟରେ ବ୍ୟବହାର କରିବାକୁ ହୁଏ । ଯଦି ରୋଗୀର କୋଷ୍ଠବଦ୍ଧତା ରହୁଥାଏ ତାହାହେଲେ– ତାପରଦିନ ଆଉ ପାନେ ବିରେଚନ ଔଷଧ ଦେବାକୁ ହେବ ।

ରୋଗୀକୁ ସର୍ବମୋଟ କେତୋଟି ପାନ ଖାଇବାକୁ ହେବ–ଚିକିତ୍ସକ ତାହା ବୁଝିଶୁଝି ବଢ଼ାଇ, କମାଇପାରିବେ । କୌଣସି ବିଶେଷ ସ୍ଥାନରେ ବିଶେଷ କୃମି ଆକ୍ରମଣ ଘଟୁଥିଲେ ଏ ଔଷଧରୁ ମାସକୁ ଗୋଟିଏପାନ ଖାଇଲେ କୃମି ଉପଦ୍ରବରୁ ରକ୍ଷାମିଳେ ।

ପ୍ୟାକିଂ–

ଦଶଟି ଲେଖାଏ ବଟିକା ଥିବା ଦଶଟି ଷ୍ଟ୍ରିପର ବାକସ ଓ ପାଞ୍ଚଶ ବଟିକା ଥିବା ଟିଣ ।

ଉସଜେଣ୍ଟ—

ଆଖିର ଫୁଲା, ଦାହ ପାଇଁ ଉତ୍ତମ ଉପଶମକାରକ ନେତ୍ରବିନ୍ଦୁ ।

ଉପାଦାନ—ଏଥିରେ ଅଛି—

| | |
|---|---|
| ଉସକର୍ପୂର | ୧.୧ ଗ୍ରା |
| ଫିଟ୍‌କିରି | ୧.୧ ଗ୍ରା. |
| ଲବଣ | ୩.୪ ଗ୍ରା. |

ଔଷଧୀୟ ଗୁଣଧର୍ମ—

ଏହି ମିଶ୍ରଣର ପ୍ରୟୋଗଦ୍ୱାରା ନେତ୍ରାବରଣ ଝିଲ୍ଲିପ୍ରଦାହ ଓ ତଦ୍‌ଜନିତ ଯନ୍ତ୍ରଣା କମିଯାଏ । ଏହାଦ୍ୱାରା ଜୀବାଣୁ ସଂକ୍ରମଣ ବାଧା ପାଏ ।

ବ୍ୟବହାର ବିଧି

ଗରମଚେ ସିଝାପାଣିରେ ଉପରୋକ୍ତ ମିଶ୍ରଣରୁ ୧ରୁ ୨ ଗ୍ରେନ୍ ମିଶାଇ ଆଖରେ ଦୁଇ ତିନିବୁନ୍ଦା ଲେଖାଏ ପକାଇବାକୁ ହୁଏ । ଗୋଟିଏ ଆଖିଧରିଥିଲେ ମଧ୍ୟ ଦୁଇ ଆଖିରେ ଔଷଧ ପକାଇବାକୁ ହେବ । ଦିନକୁ ଏଥିରୁ ଦୁଇ ତିନିଥର ଶୋଇବା ପୂର୍ବରୁ ପକାଇବାକୁ ହେବ ।

ପ୍ୟାକିଂ—

୧୧ ଗ୍ରାମ ଲେଖାଏ ।

ରିମୋରିନ୍—

ଆମବାତ ନାଶକ ଇଞ୍ଜେକ୍‌ସନ ।

ଆୟୁର୍ବେଦ ଚିକିତ୍ସାରେ ପ୍ରଚଳିତ କେତେକ ଦ୍ରବ୍ୟକୁ ଇଞ୍ଜେକ୍‌ସନରେ ବ୍ୟବହାର ଉପଯୋଗୀ କରି ପ୍ରସ୍ତୁତ କରାଯାଇଅଛି । ଏହା ନୂତନ ପୁରାତନ ଆମବାତ ଯନ୍ତ୍ରଣା ସ୍ଥଳରେ ପ୍ରଯୁଜ୍ୟ । ହରମୋପାଇରିନ୍ ସହ ଏହା ମଧ୍ୟ ପ୍ରୟୋଗ କରାଯାଇପାରେ ।

ଉପାଦାନ·

ପ୍ରତି ଏମ୍. ଏଲ୍.ରେ ଥାଏ

| | |
|---|---|
| ଚିରେଇତା | ୦.୨୯ ମି. ଗ୍ରା. |
| ଧାତୁରା | ୦.୨୫ ମି. ଗ୍ରା. |
| ସର୍ପଗନ୍ଧା | ୦.୦୩ ମି. ଗ୍ରା. |
| ଚିତାକୋରେଇ | ୦.୦୧ ମି. ଗ୍ରା. |
| ଔଷଧ ସଂରକ୍ଷକ Chlorobutol I.P. | ୦.୫୦/୦ |

ଔଷଧୀୟ ଗୁଣଧର୍ମ—

ଉପରୋକ୍ତ ଦ୍ରବ୍ୟଗୁଡ଼ିକର ରାସାୟନିକ ମିଶ୍ରଣ ହେତୁ ଏହା ସ୍ନାୟୁମଣ୍ଡଳୀ ଶାମକ, ତଥା ଅଙ୍ଗ ଗ୍ରହର ନିରୋଧକ ଓ ଆମବାତ ନାଶକ ଭାବରେ କାର୍ଯ୍ୟ କରିଥାଏ ।

ଏହି ମିଶ୍ରଣ ସାଧାରଣ ଦୁର୍ବଳତାରେ ପୁଷ୍ଟିସାଧନ କାର୍ଯ୍ୟ କରିଥାଏ । ସ୍ନାୟବିକ ଶ୍ରାନ୍ତି, ଶକ୍ତି ସାମର୍ଥ୍ୟର ଅଭାବ ସ୍ଥଳରେ ବ୍ୟବହାର କରାଯାଇ ପାରେ ।

ପ୍ରୟୋଗ ସୂଚନା -

କଟିବାତ, ସନ୍ଧି ପ୍ରଦାହ, ଗୃଧ୍ରସୀ, ପେଶୀଶୂଳ ଓ ଶାରୀରିକ ଯାବତୀୟ ଶୂଳ, ବେଦନା ଦୂର କରେ, ସ୍ନାୟୁ ଓ ମାଂସପେଶୀଗତ ଦୁର୍ବଳତା ମଧ୍ୟ ଦୂରକରେ ।

ମାତ୍ରା—

ପୂର୍ଣ୍ଣ ବୟସ୍କ ଏକ ଏମ୍. ଏଲ୍. ମାଂସପେଶୀ ବା ଶିରା ମାଧ୍ୟମରେ ଚବିଶ ଘଣ୍ଟାରେ ଥରେ ଲେଖାଏ ଦିଆଯାଇପାରେ ।

ପ୍ୟାକିଂ –

୧ ଏମ୍. ଏଲ୍. ଆମ୍ପୁଲ ୧୦ଟି ଥିବା ବାକ୍ସ ।

ରିଂପାଣ୍ଟୋ –

ପୋଡ଼ା ଘା ଓ ବିଇଞ୍ଚି ମଲମ ।

ଏହି ମଲମଟି ପୋଡ଼ା ଘା, ବିଇଞ୍ଚ, ଯାବତୀୟ କ୍ଷତ ସ୍ଥଳରେ ପ୍ରଯୁଜ୍ୟ ।

ଉପାଦାନ—

ପ୍ରତି ୧୦୦ ଗ୍ରାମରେ ନିମ୍ନ ଉପାଦାନ ଥାଏ ।

| | |
|---|---|
| ଓଲିଅମ୍ଲିନି | ୩୩.୬ ଗ୍ରା. |
| ଓଲିଅମ୍ ସିସାମି | ୮.୮ ଗ୍ରା. |

ମହୁମାଛିର ମହମ ସଂଯୋଗରେ ପ୍ରସ୍ତୁତ ।

ପ୍ରୟୋଗ ବିଧି—

ଅଗ୍ନିଦଗ୍ଧ ଓ ତାପଦଗ୍ଧ କ୍ଷତ ସ୍ଥଳରେ ଏହାକୁ ଧୀରେ ଧୀରେ ଲଗାଇବାକୁ ହେବ । ଏହାର ଶୀତଳତା ଓ କୋମଳତା ବିଧାନ ଗୁଣହେତୁ ଏହା ଦଗ୍ଧ ସ୍ଥାନର ଦାହ ଓ ଫୁଲା କମାଇଦିଏ । ଏହାକୁ ଦିନଭିତରେ ଦୁଇ ତିନିଥର ଲଗାଇବାକୁ ହୁଏ । କ୍ଷତ ଶୁଖିଯିବା ପର୍ଯ୍ୟନ୍ତ ଏହାକୁ ବ୍ୟବହାର କରିବାକୁ ହେବ । ମଲମ ଲଗାଇଥିବା ସ୍ଥାନକୁ ଘୋଡ଼ାଇ ରଖିବାର ବ୍ୟବସ୍ଥା କରିବାକୁ ହେବ ।

କ୍ଷତ ବିଇଞ୍ଚି, ଶଯ୍ୟାକ୍ଷତ ସ୍ଥାନକୁ ଗରମପାଣିରେ ଉତ୍ତମରୂପେ ଧୋଇ ଶୁଖାଇ ନେବାକୁ ହେବ । ତାପରେ ଉକ୍ତ ମଲମକୁ ଲଗାଇବାକୁ ହେବ । ଏହାକୁ ସକାଳେ ଥରେ ଓ ସନ୍ଧ୍ୟାରେ ଥରେ ଲେଖାଏ ଲଗାଇବା ଆବଶ୍ୟକ ।

ଚମଡ଼ା ଫାଟିଯାଉଥିଲେ, କୌଣସି ସ୍ଥାନର ଚମଡ଼ା ଖାସୁଖାସୁରା ଲାଗୁଥିଲେ ଏହାକୁ ବ୍ୟବହାର କରିବାଦ୍ୱାରା ଚମଡ଼ା କଅଁଳ ହୋଇଥାଏ ।

ଏହାକୁ ମୁହଁଲଗା କ୍ରିମ ଭାବରେ ବ୍ୟବହାର କରାଯାଇପାରେ । ହାତ ପାପୁଲି, ଗୋଇଠି, ଗୋଡ଼ ହାତର ଚମଡ଼ା ଫାଟି ଫାଟି ଯାଉଥିଲେ ଉକ୍ତ ସ୍ଥାନକୁ

ଗରମପାଣିରେ ଧୋଇ ଶୁଖାଇ ଏହି ମଲମ ଲଗାଇବାକୁ ହେବ ।

ଓଲିୟମ ଲିନ୍ ଏବଂ ଓଲିୟମ୍‌ସିସେମ୍‌ର ଇମଲସନ ଫାଟିଥିବା ସ୍ଥାନରେ ବ୍ୟବହାର କରାଯାଇପାରେ । ଚମଡ଼ାକୁ କୋମଳ କରିବା ଏବଂ କ୍ଷତ ପରିପୂରଣ କରିବା ଏହାର ଅନ୍ୟତମ କାର୍ଯ୍ୟ ।

ଅର୍ଶ ରୋଗରେ ଅର୍ଶର ବଳି ଓ ମଳଦ୍ୱାରରେ ମଳତ୍ୟାଗର ପୂର୍ବରୁ ବା ପରେ ବ୍ୟବହାର କରାଯାଇପାରେ । କୋଷ୍ଠବଦ୍ଧତା ଥିଲେ ଲାକ୍ସାଟିଭ୍ ବ୍ୟବହାର କରିବା ଆବଶ୍ୟକ ।

ପ୍ୟାକିଂ—

୧୮ ଗ୍ରାମ ଟ୍ୟୁବ

**୮୦ ଗ୍ରାମ ଟ୍ୟୁବ୍**

ରୁବ ଜୋନ—

ସର୍ଦ୍ଦି, ମୁଣ୍ଡବ୍ୟଥା ପାଇଁ ବାଷ୍ପ ଏବଂ ମାଲିସ୍ କରିବା ଔଷଧ ।

ବାହ୍ୟ ପ୍ରୟୋଗ ପାଇଁ ସୁପରିଚିତ ଏବଂ ପ୍ରମାଣିତ କେତେକ ଦ୍ରବ୍ୟର ମିଶ୍ରଣରେ ଏହା ପ୍ରସ୍ତୁତ । ଏହାର ବାଷ୍ପ ନିଆଯାଇପାରେ ଓ ମଲମପରି ମାଲିସ୍ କରାଯାଇଥାଏ ।

ଉପାଦାନ—

ପ୍ରତି ୫ହେ ଗ୍ରାମରେ ଥାଏ

| | |
|---|---|
| ମେନ୍ଥଲ ଆଇ. ପି. | ୫ ଗ୍ରା. |
| କର୍ପୂର ଆଇ. ପି. | ୧୦ ଗ୍ରା. |
| ଇଉକାଲିପ୍‌ଟସ ଅଏଲ ଆଇ. ପି. | ୨.୫ ମି. ଗ୍ରା. |
| ଟାର୍ପିନ ତେଲ ଆଇ. ପି. | ୨.୫ ଏମ. ଏଲ. |
| ମେନ୍ଥଲ ସିଲିକେଟ ଆଇ. ପି. | ୫ ଏମ. ଏଲ୍. |
| ପାରାଫିନ୍ ଭିତ୍ତିକ | Q.S. |

ପ୍ରୟୋଗ ବିଧି—

ପାରାଫିନ୍ ସଂଯୋଗରେ ଏହା ପ୍ରସ୍ତୁତ ହୋଇଥିବାରୁ ଏହି ମଲମର ଗୁଣ ଦୀର୍ଘସ୍ଥାୟୀ ହୋଇଥାଏ । ମେନ୍ଥରସିଲିକେଟ ଶୀଘ୍ର ଚର୍ମର ଲୋମକୂପରେ ମିଶିଯାଏ । ଏଣୁ ଏହା କଟିଶୂଳ, ଗୃଧ୍ରସୀ, ଆମବାତ ରୋଗର ବେଦନା ଦୂର କରିଥାଏ । ମେନ୍ଥଲ ଲୋମକୂପଗୁଡ଼ିକକୁ ବିସ୍ତାରିତ କରିବା ହେତୁ ଏହା ଯଥାଶୀଘ୍ର ଦେହରେ ମିଶି ସନ୍ଧି, ସ୍ନାୟୁଶୂଳ, ପେଶୀଶୂଳ ଓ ଆମବାତ ରୋଗର ଯନ୍ତ୍ରଣା ଦୂର କରିଥାଏ । କର୍ପୂର ସ୍ନାୟୁଶୂଳ, ତନ୍ତୁସ୍ଫୀତି ଜନିତ ଜ୍ୱାଳା ଯନ୍ତ୍ରଣା ଦୂର କରିବା ସଙ୍ଗେ ବେଦନା ଦୂର କରିବାରେ ସହାୟକ ହୋଇଥାଏ । ଇଉକାଲିପ୍‌ଟସ୍ ଅଏଲ ଶ୍ୱାସନଳୀର ଜୀବାଣୁନାଶକ କାର୍ଯ୍ୟ

କରିଥାଏ । ଏଣୁ ଏହାକୁ ଶୁଂଘିବା ପାଇଁ ଓ କଫ ରୋଗରେ ବାହ୍ୟିକ ପ୍ରୟୋଗ କରାଯାଇଥାଏ ।

ତାରପିନ୍ ତେଲ ମଧ୍ୟ ଇଉକାଲିପଟ୍‌ସ ତେଲ ପରି ଗୁଣସମ୍ପନ୍ନ ହୋଇଥିବାରୁ ଚର୍ମର ଦାହନାଶକ, ଉତ୍ତେଜକ, ଫୁଲନାଶକ ଏବଂ ଆମବାତ ଓ ସ୍ନାୟୁଶୂଳ ଜନିତ ବେଦନା ଦୂର କରିଥାଏ । ଶ୍ୱସନିକା ପ୍ରଦାହ ଓ ଉରସ୍ତୋୟ (ଛାତିରେ ପାଣି ଜମିଯିବା ଅବସ୍ଥା)ରେ ଏହା ଶୁଂଘିଲେ ଶ୍ୱାସନଳୀରୁ କଫକୁ ସରଳକରି ବାହାର କରିଦିଏ ଏବଂ କଫର ଅବରୋଧଜନିତ ପୀଡ଼ା ଦୂର କରିଥାଏ ।

ପ୍ରୟୋଗ ସୂଚନା—

ମୁଣ୍ଡବିନ୍ଧା, ସର୍ଦ୍ଦି, କାସ, ଶ୍ୱସନିକା ପ୍ରଦାହ, ପୀଡ଼ା, ବେଦନା, ସ୍ନାୟୁଶୂଳ ସ୍ଥଳରେ ଏହା ବିଶେଷ ପ୍ରଯୁଜ୍ୟ । ଛାତିରେ କଫ ଜମିଥିଲେ—ଏଥିରୁ କିଛି ଗରମପାଣିରେ ପକାଇ ସେ ବାଷ୍ପକୁ ନାକବାଟେ ଶୁଂଘାଯାଇପାରେ । ଆକ୍ରାନ୍ତ ସ୍ଥଳରେ ରୁବଜୋନ ଲଗାଇ ଧୀରେ ଧୀରେ ମାଲିସ୍ କରିବାକୁ ହୋଇଥାଏ ।

ପ୍ୟାକିଂ—

୫ ଗ୍ରାମ ଟ୍ୟୁବ
୧୪ ଗ୍ରାମ ଟ୍ୟୁବ

ସଲଫୋସ୍—

ହଜମକାରକ ଓ ଅଗ୍ନିଦୀପକ ବଟିକା ।

ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ କେତେକ ଜୀର୍ଣ୍ଣକାରକ ଓ ଅଗ୍ନିଦୀପକ ଦ୍ରବ୍ୟର ମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ -

ପ୍ରତି ବଟିକାରେ ଥାଏ—

| | |
|---|---|
| ରେଓଚିନି | ୩୦ ମି. ଗ୍ରା. |
| ବାଳ ହରିଦ୍ରା | ୨୮ ମି. ଗ୍ରା. |
| ଜୀରା | ୪ ମି. ଗ୍ରା. |
| ଶୁଣ୍ଠି | ୮ ମି. ଗ୍ରା. |
| ଚିତାମୂଳ | ୩୨ ମି. ଗ୍ରା. |
| କାନଫୁଲ (Taraxacum officinale) | ୩୨ ମି. ଗ୍ରା. |

ଔଷଧର ଗୁଣଧର୍ମ—

ରେଓଚିନି ଅଳ୍ପ ପରିମାଣରେ ବ୍ୟବହାର କଲେ ଏହା ଧାରକ, ତିକ୍ତ ଓ ଅତିସାର ନାଶକ ଭାବରେ କାର୍ଯ୍ୟକରେ । ବାଳହରିଦ୍ରା; ଏହା ମଧ୍ୟ ଧାରକ, ତିକ୍ତ, ପାଚକ ଓ ପିତ୍ତସ୍ରାବକୁ ନିୟନ୍ତ୍ରିତ କରେ । ଜିରା ଅଗ୍ନିଦୀପକ ଏବଂ କ୍ଷୁଧାବର୍ଦ୍ଧକ । ଶୁଣ୍ଠି ପାଚକ,

ଏହା ମଧ୍ୟ ଶୂଳବେଦନା ନାଶ କରେ । ଚିତାମଳ ସାଧାରଣତଃ ପରିପାକ ସଂସ୍ଥାର ଦୋଷ ଦୂର କରେ ଏବଂ କ୍ଷୁଧା ବୃଦ୍ଧି କରେ । କାନଫୁଲ ଅଗ୍ନିମାନ୍ଦ୍ୟନାଶକ, ମୃଦୁ ବିରେଚକ, ପୁରାତନ କୋଷ୍ଠବଦ୍ଧତା ଦୂର କରେ । ଏହି ସମସ୍ତ ଦ୍ରବ୍ୟର ମିଶ୍ରଣ ଅଗ୍ନିଦୀପକ, ପାଚକ, ପିତ୍ତରେଚକ ଭାବରେ କାର୍ଯ୍ୟ କରେ ଏବଂ କ୍ଷୁଧା ବୃଦ୍ଧି କରେ ।

ପ୍ରୟୋଗ ସୂଚନା—

ଅଗ୍ନିମାନ୍ଦ୍ୟ, ପେଟରେ ବାୟୁଜମିବା, ପିତ୍ତବିକାର ଦେଖାଦେବା, ତରଳ ପତଳା ଝାଡ଼ା ହେବା ଓ ପୁରୁଣା କୋଷ୍ଠବଦ୍ଧତା ଦୋଷ ଦୂର କରେ ।

ମାତ୍ରା—

କ୍ଷୁଧାମାନ୍ଦ୍ୟ ଅବସ୍ଥାରେ ଏଥିରୁ ୧ରୁ ୨ଟି ବଟିକା ଭୋଜନ ପୂର୍ବରୁ ସେବନ କଲେ ଏହା ପାକସ୍ଥଳୀର ଟନିକ୍ ବା ପୁଷ୍ଟିକାରକ ଔଷଧ ଭାବରେ କାର୍ଯ୍ୟ କରେ ।

ଅନ୍ୟାନ୍ୟ ପାଚକ ସଂସ୍ଥାନ ରୋଗରେ ୧ରୁ ୨ଟି ବଟିକା ଭୋଜନ ପରେ ସେବନ କଲେ ଉତ୍ତମ ଫଳ ଦେଖାଇଥାଏ ।

ଶିଶୁ—ଏରୁ ୧ ବଟିକା ।

ଅତି ଛୋଟ ଶିଶୁମାନଙ୍କୁ ଏ ସ୍ଥଳରେ ବାଇଓସଲ ଦେଲେ ବିଶେଷ ସୁଫଳ ମିଳେ ।

ପ୍ୟାକିଂ -

ଦଶଟି ବଟିକାଥିବା ଷ୍ଟ୍ରିପ୍ ଥାଏ ଗୋଟିଏ ବାକ୍ସରେ, ୨୫୦ଟି ବଟିକା ଥିବା ଶିଶି ।

ସେଞ୍ଜିନ୍—

| | |
|---|---|
| ଶୁଣ୍ଠି | ୮ ମି. ଗ୍ରା. |
| ଅଶ୍ୱଗନ୍ଧା | ୨୮ ମି. ଗ୍ରା. |
| ରସୁଣ | ୦.୨ ମି. ଗ୍ରା. |
| (କଣ୍ଟାକୁସୁମ) ସ୍ୱର୍ଣ୍ଣକ୍ଷୀରି | ୦.୮ ମି. ଗ୍ରା. |
| ଗୋଖରା | ୯୬ ମି. ଗ୍ରା. |

ଔଷଧର ଗୁଣଧର୍ମ -

ଏହି ସମସ୍ତ ଦ୍ରବ୍ୟର ମିଶ୍ରଣ ସ୍ନାୟୁମଣ୍ଡଳୀର ଶାମକ ଭାବରେ କାର୍ଯ୍ୟ କରେ । ମାନସିକ ଚଞ୍ଚଳତା, ବିକ୍ଷିପ୍ତି, ଉତ୍ତେଜନାକୁ ଶାନ୍ତି କରି ଯୌନକ୍ଷମତା ବୃଦ୍ଧି କରିଥାଏ । ଶୁଣ୍ଠି ପାଚକ କାର୍ଯ୍ୟ କରେ । ଅଶ୍ୱଗନ୍ଧା ସ୍ନାୟୁମଣ୍ଡଳୀର ଶାମକ । ରସୁଣ ଜୀବାଣୁନାଶକ, ମୂତ୍ରକାରକ ଓ ସ୍ୱେଦକାରକ । କଣ୍ଟାକୁସୁମ ସ୍ୱଳ୍ପମାତ୍ରାରେ ବ୍ୟବହାର କରିବାଦ୍ୱାରା ଏହା ସ୍ନାୟୁ କେନ୍ଦ୍ରର ଶାମକ କାର୍ଯ୍ୟ କରିଥାଏ । ଗୋଖରା ମୂତ୍ର ପ୍ରବାହ ସରଳତାକାରକ, ମୂତ୍ର ଦୋଷନାଶକ । ମୂତ୍ରଯନ୍ତ୍ରର ଉଷ୍ଣତା ନିବାରକ ଓ ଧାତ ପୁଷ୍ଟିକାରକ ।

ପ୍ରୟୋଗ ସୂଚନା -

ସ୍ନାୟବିକ କାରଣରୁ ଜନ୍ମିଥିବା ରତି ଅକ୍ଷମତା, ପରୁଷତ୍ୱହାନି, ସ୍ନାୟବିକ ଦୁର୍ବଳତା ଦୂର କରେ ଏବଂ ମୃଦୁ ଶାମକ ଭାବରେ କାର୍ଯ୍ୟ କରେ ଏବଂ ରତି କ୍ଷମତା ବୃଦ୍ଧି କରେ ।

ମାତ୍ରା—

ସ୍ନାୟୁମଣ୍ଡଳୀର ଶାମକ ଗୁଣ ପାଇଁ ଏଥିରୁ ଗୋଟିଏ ବଟିକା ଭୋଜନ ପୂର୍ବରୁ ସେବ୍ୟ ।

ରତି କ୍ଷମତା ପାଇଁ ୧ରୁ ୨ଟି ବଟିକା ଦିନକୁ ତିନିଥର ବ୍ୟବହାର କରିବାକୁ ହେବ ।

ପ୍ୟାକିଂ—

ଗୋଟିଏ ଶିଶିରେ ୬୦ଟି ବଟିକା ଥାଏ ।

ସ୍କିନ୍‌ମେଣ୍ଟ—

ଚର୍ମରୋଗନାଶକ

ଚର୍ମର ଜୀବାଣୁ, ଭୂତାଣୁନାଶକ ଦ୍ରବ୍ୟମାନଙ୍କର ମିଶ୍ରଣ, । ଏହା ବାହ୍ୟିକ ପ୍ରୟୋଗ ପାଇଁ ପ୍ରଶସ୍ତ ।

ଉପାଦାନ—

ପ୍ରତି ୧୦୦ ଗ୍ରାମରେ ଥାଏ

| | | |
|---|---|---|
| ବେଞ୍ଜୋଇକ୍ ଏସିଡ୍ ଆଇ. ପି. | | ୨ ଗ୍ରା. |
| ସାଲିସାଲିକ୍ ଏସିଡ୍ ଆଇ. ପି. | | ୪ ଗ୍ରା. |
| ଇସ୍ତାମୋର ଆଇ. ପି | | ୮ ଗ୍ରା. |
| ଡ଼ିଥ୍ରାନଲ | ଆଇ. ପି. | ୦.୨୨ ଗ୍ରା. |
| ସଲଫର ସବ୍‌ଲିମ୍ | ଆଇ. ପି. | ୨.୭୯ ଗ୍ରା. |
| ପାରାଫିନ ଭିତ୍ତିକ | | q.s. |

ପ୍ରୟୋଗ ସୂଚନା—

ବେଞ୍ଜୋଇକ୍ ଏସିଡ୍, ସାଲିସାଲିକ୍ ଏସିଡ୍ ଏବଂ ଡିଥ୍ରାନଲ ଚର୍ମ ଉପରେ ହେଉଥିବା କବକ ସଂକ୍ରମଣ (ଛତି ମାରିଯିବା) ଏବଂ ପୁରୁଣା ବିଚଛକା ରୋଗରେ ବିଶେଷ ଉପକାର ଦେଖାଇଥାଏ । ଇସ୍ତାମୋଲ ଜୀବାଣନାଶକ ଏବଂ ଯାବତୀୟ ଚର୍ମରୋଗ ଦୂର କରିବା ପାଇଁ ମଲମ ଭାବରେ ବ୍ୟବହାର କରାଯାଇଥାଏ । ସଲଫର (ଗନ୍ଧକ) ଯାବତୀୟ ଚର୍ମରୋଗ, କାଛ , କୁଣ୍ଡିଆ ଓ ଯାଦୁରୋଗରେ ବ୍ୟବହୃତ ହୋଇଥାଏ । ଏହା ଜୀବାଣୁ, ଭୂତାଣୁ ନାଶ କରିବାରେ ଉତ୍ତମ ଫଳପ୍ରଦ ।

ଓିନ୍‌ମେଣ୍ଟ ମୁଖ୍ୟତଃ, ଯାଦୁ, କୁଣ୍ଡିଆ, କାଛୁ, ବିଇଂଚି, ପାମା ଓ ବିଚର୍ଚ୍ଚିକା ରୋଗରେ ବ୍ୟବହୃତ ହୋଇଥାଏ ।

ବ୍ୟବହାର ବିଧି–

ରାତିରେ ଶୋଇବା ସମୟରେ ଏହି ମଲମକୁ ଧୀରେ ଧୀରେ ଆକ୍ରାନ୍ତ ସ୍ଥାନ ଉପରେ ମାଲିସ୍ କରିବାକୁ ହୁଏ–ପରେ ସକାଳେ ତାହା ଉତ୍ତମ ରୂପେ ଧୋଇ ଦେବାକୁ ହୁଏ । ନରମ ସ୍ଥାନରେ ବ୍ୟବହାର କରିବାକୁ ହେଲେ ଏହି ମଲମରୁ କିଛି ନେଇ ଖାଇବା ତେଲରେ ମିଶାଇ ବ୍ୟବହାର କରାଯାଇପାରେ ।

ହାତ ପାପୁଲି ବା ପାଦ ଫାଟୁଥିଲେ ଏହାକୁ ମାତ୍ର ଦଇଥର ବ୍ୟବହାର କଲେ ଉତ୍ତମ ଫଳ ମିଳିଥାଏ । ଆକ୍ରାନ୍ତ ସ୍ଥାନକୁ ଗରମ ପାଣିରେ ଧୋଇ ଶୁଖାଇ ନେବେ । ତାପରେ ଏହି ମଲମ ଲଗାଇ ଧୀରେ ପଟି ବାନ୍ଧି ଦେବେ । ଏହାକୁ ଆଖି ମାଝାରେ ବ୍ୟବହାର କରିବେ ନାହିଁ ।

ପ୍ୟାକିଂ

୧୫ ଗ୍ରାମ ଥିବା ଟ୍ୟୁବ;

୮୦ ଗ୍ରାମ ଥିବା ଟ୍ୟୁବ;

ସ୍ନୋଲାକ୍‌ସ–

ମୃଦୁ ବିରେଚକ ଔଷଧ ।

ପ୍ରାକୃତିକ ବନସ୍ପତି ସଂଯୋଗରେ ଏହା ପ୍ରସ୍ତୁତ । ଏହା ପୁରୁଣା କୋଷ୍ଠକାଠିନ୍ୟ ରୋଗ ଦୂର କରି ସ୍ୱାଭାବିକ ଝାଡ଼ା ପରିଷ୍କାର କରାଏ । ଏହାକୁ ବ୍ୟବହାର କରିବା ଦ୍ୱାରା ପେଟ ମୋଡ଼ି ହେବା ବା ପେଟରେ କୌଣସି ଜ୍ୱାଳା ଯନ୍ତ୍ରଣା ହୁଏ ନାହିଁ ।

ଉପାଦାନ–

ପ୍ରତି ୫ଗ୍ରା ବଟିକାରେ ଥାଏ

| | |
|---|---|
| ଇସପ୍‌ଗୋଲ | ୨.୫ ଗ୍ରା |
| ଗମ୍‌ଟ୍ରାଗାକାନ୍ଥ ( Gumtragacanth ) | ୦.୫ ଗ୍ରା |
| ଏକ୍‌ସଟ୍ରାକ୍‌ଟ ସାନା (୧.୫) | ୦.୧ ଗ୍ରା |
| ସଉପ | ୦.୧୨୫ ଗ୍ରା |
| ଜୀରା | ୦.୧୨୫ ଗ୍ରା |
| ବେଷ୍ଟକ ପଦାର୍ଥ | |

ଔଷଧର ଗୁଣଧର୍ମ–

ସାନାର କ୍ରିୟାଶୀଳ ଉପାଦାନ ସହଜରେ ଅନ୍ତନଳୀରେ ମିଶିଯାଇ ବୃହଦନ୍ତ୍ରରେ ପହଞ୍ଚିଯାଏ । ସେଠାରେ କ୍ରିୟାଶୀଳ ହୋଇ ମଳ ନିଃସାରଣ କରିଥାଏ । ସଉପ ହେଉଛି ସୁଗନ୍ଧିଯୁକ୍ତ ପାଚକ ଦ୍ରବ୍ୟ । ଏହାକୁ ସାଧାରଣତଃ ପେଟ ଫାମ୍ପିବା ଅବସ୍ଥାରେ ଦିଆ

ଯାଇଥାଏ । ଇସବ୍‌ଗୋଲର ଏକ ଅଦ୍ଭୁତ ଗୁଣ ଅଛି । ଏହା ଅନ୍ତ୍ରମଣ୍ଡଳୀର ଯାବତୀୟ ବିଷାକ୍ତ ଦୋଷକୁ ଗ୍ରହଣ କରି ଯାନ୍ତ୍ରିକ ପ୍ରଣାଳୀରେ ମଳନିଃସାରଣ କରିବାରେ ସାହାଯ୍ୟ କରିଥାଏ । ଏଥିରେ ସରଳ ଝାଡ଼ା ହୁଏ—ମଳ ପତଳା ହୁଏ ନାହିଁ ।

ପ୍ରୟୋଗ ସୂଚନା—

ବୃହଦନ୍ତ୍ରର ସ୍ତବ୍ଧତା ଖାଦ୍ୟରେ ପୁଷ୍ଟିକାରକ ଉପାଦାନର ଅଭାବଜନିତ କୋଷ୍ଠବଦ୍ଧତା ଦୂର କରିବାରେ ଏହା ବିଶେଷ ହିତକର । ଯେଉଁମାନେ କୌଣସି ବ୍ୟାୟାମ କରନ୍ତି ନାହିଁ, ଯେଉଁମାନେ ବୟସ୍କ,ଶିଶୁ ବା ଶଯ୍ୟାଗ୍ରସ୍ତ ରୋଗୀ ସେମାନଙ୍କର କୋଷ୍ଠବଦ୍ଧତା ଦୂର କରିବାରେ ସାହାଯ୍ୟ କରିଥାଏ । ଅର୍ଶ ରୋଗୀମାନଙ୍କର ମଳ ନିଃସାରଣ କାର୍ଯ୍ୟକୁ ସରଳ କରାଇ ସେମାନଙ୍କୁ ଯନ୍ତ୍ରଣାମୁକ୍ତ କରାଇଥାଏ ।

ଅତିସାର ଓ ଗ୍ରହଣୀ ରୋଗର ଚିକିତ୍ସା ସ୍ଥଳରେ ଏହାକୁ ଏକ ସହାୟକ ଔଷଧ ଭାବରେ ବ୍ୟବହାର କରାଯାଇପାରେ ।

ମାତ୍ରା—

ପୂର୍ଣ୍ଣବୟସ୍କ—

୧ ଚାମଚରୁ ତିନିଚାମଚ ଏକ ଗ୍ଲାସ ଜଳସହ ସନ୍ଧ୍ୟା ସମୟରେ ବ୍ୟବହାର କରିବାକୁ ହୋଇଥାଏ । କିମ୍ବା ଖାଇବାର ଦୁଇଘଣ୍ଟା ପୂର୍ବରୁ ବା ପରେ ବ୍ୟବହାର କଲେ ତା ପର ଦିନ କୋଷ୍ଠଶୁଦ୍ଧି ଘଟିଥାଏ ।

ଶିଶୁ—୧ ଚାମଚ ଜଳସହ;

ପ୍ୟାକିଂ—

୭୫ ଗ୍ରାମ, ୨୦୦ ଗ୍ରାମ,

ସଲଫାସିନ୍—

ସଲଫାଡ଼ିମାଇଡ଼ିନ୍ ଓ ଅର୍କର ସତ୍ତ୍ୱର ସଂମିଶ୍ରଣରେ ପ୍ରସ୍ତୁତ ଇଞ୍ଜେକ୍‌ସନ । ବିଭିନ୍ନ ଅବସ୍ଥାରେ ପ୍ରଯୁଜ୍ୟ ।

ଉପାଦାନ—

ପ୍ରତି ଏମ୍. ଏଲ.ରେ ଥାଏ

| | |
|---|---|
| ଅରଖ | ୦.୦୧ ମି:ଗ୍ରାମ, |
| ସଲଫାଡ଼ିମାଇଡିନ୍ (ଆଇ.ପି.) | ୫ ମି.ଗ୍ରା, |
| ସଂରକ୍ଷକ ଉପାଦାନ ଫେନଲ (ଆଇ.ପି.) | ୦.୫ % |

ଔଷଧର ଗୁଣଧର୍ମ—

ଆୟୁର୍ବେଦ ଚିକିତ୍ସାରେ ଅରଖ ଗଛକୁ ସିଫିଲିସ୍ (ଉପଦଂଶ) କ୍ଷତ ଓ ଜୀବାଣୁ ସଂକ୍ରମଣ ସ୍ଥଳରେ ବ୍ୟବହାର କରାଯାଇଥାଏ । ସଲଫାଡ଼ିମାଇଡ଼ିନ ଜୀବାଣୁନାଶକ

ଦ୍ରବ୍ୟ ଭାବରେ ସୁପରିଚିତ । ଏହି ଦ୍ରବ୍ୟଗୁଡ଼ିକର ମିଶ୍ରଣକୁ ସ୍ୱଳ୍ପମାତ୍ରାରେ ପ୍ରୟୋଗ କଲେ କୌଣସି କୁପ୍ରତିକ୍ରିୟା ଦେଖାଯାଏ ନାହିଁ । ଉଭୟ ଦ୍ରବ୍ୟ ପରସ୍ପର ଗୁଣର ପରିପୂରକ ।

ପ୍ରୟୋଗ ସ୍ଥଳ—

ପୁରାତନ କ୍ଷତ, ଶ୍ୱସନିକା ପ୍ରଦାହ, ତୁଣ୍ଡିକେରି (ଟନ୍‌ସିଲ୍ଲଇଟିସ୍) ସ୍ୱରକପ୍ରଦାହ (ଫେରେଞ୍ଜାଇଟିସ୍) କାନ୍ ଓ ନାକରେ ପୁଜ ହେବା ଏବଂ ମୂତ୍ର ପ୍ରଜନନ ପ୍ରକ୍ରିୟାର ଯେକୌଣସି ସଂକ୍ରମଣ ଘଟିଲେ ଏହାକୁ ପ୍ରୟୋଗ କରାଯାଇଥାଏ ।

ମାତ୍ରା

୧ ଏମ୍. ଏଲ୍. ପେଶୀ ମଧ୍ୟରେ ଇଞ୍ଜେକ୍‌ସନ ଦିଆଯାଇଥାଏ ଚବିଶ ଘଣ୍ଟାରେ ଥରେ ଲେଖାଁଏ । ଏହା ସହିତ ହିମୋପ୍ଲେକ୍‌ସ ଏବଂ ଆୟୋବିନ୍ ମଧ୍ୟ ପ୍ରୟୋଗ କରାଯାଇଥାଏ ।

ପ୍ୟାକିଂ—

୧ ଏମ୍. ଏଲ୍. ଆମ୍ପୁଲ, ୧୦ଟି ଥିବା ବାକ୍‌ସ,

୧ ଏମ୍. ଏଲ୍. ଆମ୍ପୁଲ ୫୦ଟି ଥିବା ବାକ୍‌ସ,

ଟ୍ୟାକସିନ୍—

ମୃଦୁ ବିରେଚକ ବଟିକା,

ଫେନୋଲପାଥିଲିନ୍ ସହିତ କେତେକ ମୃଦୁ ବିରେଚକ ବନୌଷଧି ମିଶ୍ରଣରେ ପ୍ରସ୍ତୁତ । ଯେଉଁମାନଙ୍କର ବରାବର କୋଷ୍ଠବଦ୍ଧତା ଥାଏ, ସେମାନଙ୍କ ପକ୍ଷରେ ଏହା ବିଶେଷ ହିତକାରକ । ଏହା ଯକୃତକ୍ରିୟାକୁ ଉନ୍ନତ କରାଏ । ଏହା ସୁସ୍ୱାଦୁ ଓ ସୁଗନ୍ଧଯୁକ୍ତ ।

ଉପାଦାନ—

ପ୍ରତି ବଟିକାରେ ଥାଏ,

| | |
|---|---|
| ଏକ୍‌ସଟ୍ରାକ୍‌ଟ କାସକାରା ସାଗରାଡ଼ା (ଏନ୍. ଏଫ୍.) | ୪୮.୬ ମି. ଗ୍ରା, |
| ଫେନୋଲ ପାଥେଲିନ୍ (ଆଇ. ପି.) | ୧୦୦ ମି. ଗ୍ରା, |
| ସୁନାମୁଖୀ ପତ୍ର | ୮୧ ମି. ଗ୍ରା, |
| କାଲଦାନା | ୧୬.୨ ମି. ଗ୍ରା, |

ଔଷଧର ଗୁଣଧର୍ମ—

ବୃହଦନ୍ତ୍ରର ସ୍ତବ୍ଧତାଜନିତ କୋଷ୍ଠକାଠିନ୍ୟ ସ୍ଥଳରେ ଏହା ମୃଦୁ ବିରେଚକ କାର୍ଯ୍ୟ କରିଥାଏ । ଅର୍ଶ ରୋଗୀମାନଙ୍କ ପକ୍ଷରେ ଏହା ବିଶେଷ ଉପକାରକ ହୋଇଥାଏ । ସୁନାମୁଖୀ ବୃହଦନ୍ତ୍ରରେ ମିଶି ମଳ ନିଃସାରଣରେ ସହାୟକ ହୋଇଥାଏ । ଏହା ଦ୍ୱାରା

ଆମାଶୟ ବା କ୍ଷୁଦ୍ରଅନ୍ତ୍ର ଉପରେ କୌଣସି କୁପ୍ରତିକ୍ରିୟା ସୃଷ୍ଟି କରେ ନାହିଁ । ଏହା ବୃହଦନ୍ତ୍ରର ଆକୁଞ୍ଚନ କ୍ରିୟାକୁ ସୁନିୟନ୍ତ୍ରିତ କରେ । ଫେନୋଲ୍‌ପାଥିଲିନ୍ ଏକ ନିର୍ଦ୍ଦୋଷ ଦ୍ରବ୍ୟ । ଏହା ସାମାନ୍ୟ ଭାବରେ ପରିଶୋଷିତ ହୋଇ ପିତ୍ତରେ ମିଶିଥାଏ । ଏହା ପ୍ରତ୍ୟକ୍ଷ ଭାବରେ ବୃହଦନ୍ତ୍ରକୁ ସକ୍ରିୟ କରିଥାଏ । ଭାରତବର୍ଷରେ କାଲଦାନା ବିରେଚକ ଦ୍ରବ୍ୟ ଭାବରେ ସୁପରିଚିତ । ଏହାର ଗୁଣ ଜୟପାଳ ମଞ୍ଜି ଭଳି ତୀବ୍ର ବିରେଚକ । ଅଳ୍ପ ପରିମାଣରେ ଟାକ୍‌ସିନ୍‌ରେ ମିଶା ଯାଇଥିବାରୁ ଅନ୍ତ୍ରରେ କୌଣସି ବେଦନା ସୃଷ୍ଟି କରେ ନାହିଁ ।

ପ୍ରୟୋଗ ସ୍ଥଳ—

ପିତ୍ତଜନିତ ଶିରଃଶୂଳ ରୋଗରେ ଏହା ଉତ୍ତମ ବିରେଚକ କାର୍ଯ୍ୟ କରିଥାଏ । ଏହା କୋଷ୍ଠକାଠିନ୍ୟ ଦୂର କରିବା ସଙ୍ଗେ ସଙ୍ଗେ ନିୟମିତ ମଳଶୁଦ୍ଧି କରିବାରେ ସହାୟକ ହୁଏ ।

ମାତ୍ରା—

ପୂର୍ଣ୍ଣବୟସ୍କ——୧ଟାରୁ ଦୁଇଟି ବଟିକା, ରାତିରେ ଶୋଇବା ପୂର୍ବରୁ ସେବନ କରିବାକୁ ହେବ ।

ଶିଶୁ—୧/୨ରୁ ୧ଟି ବଟିକା;

ପ୍ୟାକିଂ—

୪ଟି ବଟିକା ଥିବା ଗୋଟିଏ ଷ୍ଟ୍ରିପ୍,
ଦଶଟି ଲେଖାଏଁ ବଟିକାଥିବା ଦଶଟି ଷ୍ଟ୍ରିପର ବାକ୍‌ସ,
ପାଞ୍ଚଶହ ବଟିକା ଥିବା ଟିଣ;

ଟ୍ରୁଟଇ କୋ—

ମୂତ୍ରବର୍ଦ୍ଧକ ଓ ମୂତ୍ର ପ୍ରଜନନ ପ୍ରକ୍ରିୟାରେ ଜାତ ଜୀବାଣୁନାଶକ । ଆୟୁର୍ବେଦ ଚିକିତ୍ସାରେ ସୁପ୍ରଚଳିତ ମୂତ୍ରବର୍ଦ୍ଧକ ଓ ଜୀବାଣୁନାଶକ କେତେକ ଦ୍ରବ୍ୟର ସଂମିଶ୍ରଣରେ ପ୍ରସ୍ତୁତ ।

ଉପାଦାନ—

| | |
|---|---|
| ଟ୍ରୁରାଇ | ୫ ମି.ଗ୍ରା, |
| କବାବଚିନି | ୨୮ ମି.ଗ୍ରା, |
| ପୁନ୍ନର୍ଣ୍ଣବା | ୮୮ ମି.ଗ୍ରା, |
| ଗୋଖରା | ୮୪ ମି.ଗ୍ରା, |
| କାନଫୁଲ | ୫୬ ମି.ଗ୍ରା; |

ଔଷଧର ଗୁଣଧର୍ମ—

ଟ୍ରାଇ ଏକ ଶକ୍ତିଶାଳୀ ମୂତ୍ରବର୍ଦ୍ଧକ ଓ ଯକୃତ୍‌ର ଟନିକ୍ । ଏହା ପାଚକ ପିତ୍ତର ସ୍ରାବକୁ ବଢ଼ାଏ ଏବଂ ବୃକକ (କିଡ଼ନି)ର ପୁଷ୍ଟି ବିଧାନ କରେ । କବାବଚିନି ମୂତ୍ରପ୍ରଜନନ ପ୍ରକ୍ରିୟାର ବିଶୋଧକ ଏବଂ ଏହା ଔପସର୍ଗିକ ମେହ (ଗନେରିୟା) ଜନିତ ମୂତ୍ରନଳୀ ପ୍ରଦାହ ମୂତ୍ରାଶୟ ପ୍ରଦାହ,ଦୂର କରେ । ଆୟୁର୍ବେଦ ଚିକିତ୍ସାରେ ବୃକ୍କ ଓ ବସ୍ତି (ମୂତ୍ରାଶୟ)ରେ ହୋଇଥିବା ଅଶ୍ମରି ରୋଗରେ ଏହା ପ୍ରୟୋଗ କରାଯାଏ । ପୁନର୍ଣ୍ଣବାର ମୂତ୍ରବର୍ଦ୍ଧକ ଗୁଣ ଆୟୁର୍ବେଦ ଚିକିତ୍ସାରେ ସୁପରିଚିତ, ଶୋଥ, ବୃକ୍କରୋଗ, ଉଦରୀ ଓ ହୃତ୍‌ବାହିକା ଅବରୋଧରେ ପ୍ରୟୋଗ କରାଯାଇଥାଏ । ଗୋଖରା ମୂତ୍ରକୃଚ୍ଛ୍ର ଓ ମୂତ୍ରନଳୀ ପ୍ରଦାହ ସ୍ଥଳରେ ପ୍ରୟୋଗ କରାଯାଇଥାଏ । କାନଫୁଲ ଅତାନିକ ଅଗ୍ନିମାନ୍ଦ୍ୟ (ଅତାନିକ—ପୁଷ୍ଟିହୀନତାଜନିତ) ମୃଦୁ ବିରେଚକ, ଯକୃତ୍ ବିକାରନାଶକ ଏବଂ ମୂତ୍ରବର୍ଦ୍ଧକ ।

ପ୍ରୟୋଗ ସ୍ଥଳ—

ଯେଉଁ ସ୍ଥଳରେ ମୂତ୍ରବୃଦ୍ଧି ଆବଶ୍ୟକ ଏବଂ ମୂତ୍ରପ୍ରଜନନ ପ୍ରକ୍ରିୟାରେ ପୂୟନିରୋଧ ଆବଶ୍ୟକ ସେ ସ୍ଥଳରେ ଏହା ପ୍ରୟୋଗ କରାଯାଇଥାଏ । ଏହା ଶାମକ, ବେଦନା-ନାଶକ, ଅଶ୍ମରି ଯୋଗୁଁ ମୂତ୍ରନଳୀରେ ଦାହ ଯନ୍ତ୍ରଣା ହେଉଥିଲେ ଏହାର ପ୍ରୟୋଗ ସୁଫଳ ଦେଇଥାଏ ।

ମାତ୍ରା—

ପୂର୍ଣ୍ଣବୟସ୍କ ଲୋକଙ୍କ ପାଇଁ ୧ରୁ ଦୁଇଟି ବଟିକା ଦିନକୁ ତିନି ଥର । ଏହାର ପ୍ରୟୋଗ ସମୟରେ ରୋଗୀକୁ ପ୍ରଚୁର ପରିମାଣ ପାଣି ପିଇବାକୁ ଦେବା ଆବଶ୍ୟକ ।

ପ୍ୟାକିଂ—

ଗୋଟିଏ ଶିଶିରେ ପଚାଶଟି ବଟିକା ଥାଏ ।

ଭାଇଟାଲ ଏସେନ୍‌ସ—

ସ୍ନାୟୁ ଉତ୍ତେଜନାନାଶକ ବଟିକା ।

ଏହା ଖାଇବା ଦ୍ୱାରା, ପୁନଃ ପୁନଃ ଖାଇବା ପାଇଁ ଅଭ୍ୟାସ ବଢ଼େ ନାହିଁ ବା ସ୍ନାୟୁମଣ୍ଡଳୀ ଉପରେ କୌଣସି ଅବସାଦଜନକ ପ୍ରଭାବ ପକାଏ ନାହିଁ ଏବଂ ସ୍ନାୟୁ-ମଣ୍ଡଳୀର ପୁଷ୍ଟିବିଧାୟକ ଭାବରେ କାର୍ଯ୍ୟ କରେ ।

ଉପାଦାନ—

ପ୍ରତି ବଟିକାରେ ଥାଏ

| | |
|---|---|
| ଖୁରାସାନି ଜୁଆଣି | ୪୬.୦ ମି.ଗ୍ରା, |
| ଛୋଟାଗନ୍ଧ | ୨୦.୦ ମି.ଗ୍ରା, |
| ବାଳତଗର | ୧୨୦.୦ ମି.ଗ୍ରା |
| ଅଶ୍ୱଗନ୍ଧା | ୮୦.୦ ମି.ଗ୍ରା; |

ଅଶ୍ୱଗନ୍ଧା ସ୍ନାୟୁ କେନ୍ଦ୍ରର ଶାମକ ଭାବରେ ସୁପ୍ରଚଳିତ ଏବଂ ଏକ ବାଜୀକର ଔଷଧ । ଏହା ମଧ୍ୟ ଲଘମାତ୍ରାରେ ମୂତ୍ରବର୍ଦ୍ଧକ । ଛୋଟାଗ୍ରନ୍ଦ ରକ୍ତଗ୍ରପ ଆଧିକ୍ୟ, ମାନସିକ ବିଷିପ୍ତି, ସ୍ନାୟବିକ ଉତ୍ତେଜନା ସ୍ଥଳରେ ପ୍ରୟୋଗ କରାଯାଇଥାଏ । ବାଳତଗର ନିଦ୍ରାହୀନତା, ମାନସିକ ଉତ୍ତେଜନା, ଅପସ୍ମାର, ଯୋଷାପସ୍ମାର, ସନ୍ନ୍ୟାସ ରୋଗରେ ସୁଫଳ ଦେଖାଇଥାଏ । ଖୁରାସାନି ଯଆଣି ପାଚକ ଏବଂ ଅଙ୍ଗଗ୍ରହ ନାଶକ ।

ପ୍ରୟୋଗ ବିଧି

ଯାବତୀୟ ମାନସିକ ବିକାର, ସ୍ନାୟବିକ ଉତ୍ତେଜନା, ନିଦ୍ରାହୀନତା, ମାନସିକ ଚଞ୍ଚଳତା, ପେଶୀ ଓ ଅସ୍ଥିଶୂଳ, ଶିରଃଶୂଳ, ସ୍ନାୟଶୂଳ ଅବସ୍ଥାରେ ପ୍ରଯୁଜ୍ୟ । ଏହା ଦିନ-ବେଳା ଦେବା ପ୍ରଶସ୍ତ ।

ମାତ୍ରା -

ପୂର୍ଣ୍ଣବୟସ୍କ,

ଏକରୁ ଦୁଇଟି ବଟିକା ଦିନକୁ ତିନି ଥର । ଆବଶ୍ୟକତା ଅନୁଯାୟୀ ଏହାର ମାତ୍ରା କମ୍ ବେଶି କରାଯାଇ ପାରେ । ଅନ୍ୟ ଚିକିତ୍ସା ବ୍ୟବସ୍ଥାର ପରିପୂରକ ଭାବରେ ଏହା ମଧ୍ୟ ବ୍ୟବହାର କରାଯାଇ ପାରେ ।

ଶିଶୁ–

$\frac{1}{8}$ ରୁ $\frac{1}{2}$ ବୟସ ଅନୁପାତରେ ପ୍ରଯୁଜ୍ୟ ।

ପ୍ୟାକିଂ—

ଦଶଟି ବଟିକା ଥିବା ଦଶଟି ଷ୍ଟ୍ରିପର ବାକ୍ସ;
ଦୁଇଶହ ପଚାଶ ବଟିକା ଥିବା ଶିଶି ।

ରୁହିର କୋ—

ବିଛାକାମୁଡ଼ା ଓ ସ୍ତ୍ରୀମାନଙ୍କର ଋତୁ ବିରତିକାଳୀନ ବିକୃତି ସ୍ଥଳରେ ପ୍ରଯୁଜ୍ୟ ହୋମିଓପାଥିକ୍ ବଟିକା ।

ବର୍ଣ୍ଣନା—

ହୋମିଓପ୍ୟାଥିକ ଦ୍ରବ୍ୟର ସଂମିଶ୍ରଣରେ ଏହା ପ୍ରସ୍ତୁତ । ଏହା ଋତୁ ବିରତି କାଳୀନ ଉପସର୍ଗ ଓ କଙ୍କଡ଼ାବିଛା କାମୁଡ଼ାର ଯନ୍ତ୍ରଣାସ୍ଥଳରେ ପ୍ରଯୁଜ୍ୟ ।

ଔଷଧର ଘଟକ :–

ପ୍ରତି ବଟିକାରେ ଥାଏ–

| | |
|---|---|
| କ୍ଲଚେସିସ୍ ୬ × | ୦.୭୮ ମି. ଗ୍ରା. |
| ଟ୍ୟୁବରକ୍ୟୁଲିନମ୍ ୬ × | ୦.୦୦୩୪ ମି. ଗ୍ରା. |
| ଏକ୍ସପିନେଣ୍ଟାସ | q.s, |

ମାତ୍ରା–

ପ୍ରାପ୍ତବୟସ୍କ–ଥରକେ ଗୋଟିଏ ବଟିକା, ଆବଶ୍ୟକସ୍ଥଳେ ପ୍ରତି ଘରିଘଣ୍ଟା ଅନ୍ତରରେ ପ୍ରଯୁଜ୍ୟ ।

ଶିଶୁ–୧।୪, ୧।୨ ବଟିକା

ଔଷଧର କୌଣସି ଉପଦ୍ରବ ନ ଥାଏ ।

ପ୍ୟାକିଂ–ପ୍ରତି ଶିଶିରେ ୩୦ ବଟିକା ଥାଏ ।

---

# ତୃତୀୟ ଭାଗ

ଉପକ୍ରମ—ଏହି ପ୍ରକରଣରେ ବିଭିନ୍ନ ରୋଗରେ ଚିକିତ୍ସାର ପ୍ରୟୋଗ ପ୍ରଣାଳୀ ଆଲୋଚନା କରାଯିବ । ଔଷଧଗୁଡ଼ିକୁ ଦ୍ରବ୍ୟର ଗୁଣ ଅନୁଯାୟୀ ଦିଆଯାଇପାରେ । କିନ୍ତୁ ତା ପୂର୍ବରୁ ରୋଗ ନିର୍ଣ୍ଣୟ ଠିକ୍ ଭାବରେ ହୋଇଥିଲେ ଚିକିତ୍ସା କାର୍ଯ୍ୟ ସହଜ ହୋଇପଡ଼େ ।

ପ୍ରଥମେ ଚିକିତ୍ସକ ରୋଗୀର ଶାରୀରିକ ଗଠନ, ପ୍ରକୃତି, ଲିଙ୍ଗ, ବୟସ, ରୋଗ ଆକ୍ରମଣର ସମୟ ଇତ୍ୟାଦି ଦୃଷ୍ଟିରୁ ଔଷଧର ମାତ୍ରା ଠିକ୍ କରିବେ । ଶରୀର ଭିତରେ ଔଷଧ କିପରି କାମକରେ ଏବଂ ଔଷଧର କ୍ରିୟାକଳାପର ପରିସର କଅଣ ସେ ବିଷୟରେ ଚିକିତ୍ସକ ଅବହିତ ହେବା ଆବଶ୍ୟକ । ଔଷଧ ବ୍ୟବହାର ସମୟରେ କୌଣସି ଉପସର୍ଗ ଦେଖାଗଲେ ତାହା ଅବିଳମ୍ବେ ଚିକିତ୍ସକଙ୍କୁ ଜଣାଇବା ପାଇଁ ରୋଗୀକୁ ପରାମର୍ଶ ଦେବା ଆବଶ୍ୟକ ।

ଔଷଧର ଗୁଣ ସମ୍ପର୍କରେ ଦ୍ୱିତୀୟ ଭାଗରେ ଆଲୋଚନା କରାଯାଇଅଛି । ଚିକିତ୍ସା କାର୍ଯ୍ୟକୁ ସୁଗମ ଓ ସରଳ କରିବାପାଇଁ ଏ ସ୍ଥଳରେ କେତେକ ପ୍ରାସଙ୍ଗିକ ବିଷୟରେ ଉଲ୍ଲେଖ କରାଯାଉଅଛି ।

ଆମର ପ୍ରଥମ ଲକ୍ଷ୍ୟ ଦୁଃସ୍ଥ ଜନସାଧାରଣଙ୍କ ସେବା କରିବା, ଏଣୁ ରୋଗୀ ପାଇଁ ଔଷଧ ନିର୍ବାଚନ କରିବା ସମୟରେ ଔଷଧର ପୁଷ୍ଟିକାରିକତା ଗୁଣ ଓ ରୋଗୀର ପରିପାକ ଶକ୍ତି ବିଷୟରେ ଯଥାର୍ଥ ଧ୍ୟାନ ଦେବା ଆବଶ୍ୟକ ।

ରୋଗୀର ପ୍ରକୃତି ଅନୁଯାୟୀ କିପରି ଔଷଧ ପ୍ରୟୋଗ କରିବାକୁ ହେବ ତାହା ନିମ୍ନରେ ଆଲୋଚନା କରାଯାଉଅଛି । ଏଣୁ ଏହି ଅଧ୍ୟାୟଟିରେ ବର୍ଣ୍ଣିତ ପ୍ରତି ଶିରୋ-ନାମାରେ ଲିଖିତ ବିଷୟବସ୍ତୁକୁ ମନୋଯୋଗ ସହକାରେ ପାଠକଲେ ଔଷଧଗୁଡ଼ିକ ଶରୀର ଭିତରେ କିପରି କାର୍ଯ୍ୟକାରୀ ହୁଏ, ସେ ବିଷୟରେ ସୁସ୍ପଷ୍ଟ ଧାରଣା କରି ହୁଏ,

ପୁଷ୍ଟିବିଧାନ :—ଫସ୍ଫେଟ, କାଲସିଅମ୍, ମ୍ୟାଗ୍ନେସିୟମ୍ ପ୍ରଭୃତି ଧାତବ ଉପାଦାନ ସଙ୍ଗେ ଅନ୍ୟାନ୍ୟ ପୁଷ୍ଟିକାରକ ବନସ୍ପତିମାନଙ୍କର ମିଶ୍ରଣରେ ଆମର "ଆଲବୋସାଙ୍ଗ" ଔଷଧଟି ପ୍ରସ୍ତୁତ। ଏଣୁ ଏହାକୁ ଏକ ଉପଚୟକାରକ ଯୋଗ ଭାବରେ ଗ୍ରହଣ କରାଯାଇପାରେ ଯେକୌଣସି ସୁଷମ ଖାଦ୍ୟ ସଙ୍ଗେ ଏହାକୁ ସହାୟକ ଯୋଗ ଭାବରେ ଗ୍ରହଣ କରାଯାଇପାରେ । ବ୍ୟକ୍ତିବିଶେଷର ଆବଶ୍ୟକତା, ପରିପାକ ଶକ୍ତି ଅନୁଯାୟୀ ପଥ୍ୟ ନିୟନ୍ତ୍ରିତ ହେବା ଆବଶ୍ୟକ ।

ମାତ୍ରାଧିକ ଖାଦ୍ୟ ଖାଇବା ଓ ବସିରହି ଗୁଡ଼ାଏ କାମ କରିବା ଆଧୁନିକ ସଭ୍ୟତାର ଦୁଇଟି ଅଭିଶାପ । ମାତ୍ର ସାଧାରଣ ସ୍ୱାସ୍ଥ୍ୟ ପାଇଁ ଖାଦ୍ୟ ପାନୀୟର ନିୟନ୍ତ୍ରଣ ଯେ ଏକାନ୍ତ କାମ୍ୟ ଏକଥାଟି ଭୁଲିଗଲେ ଚଳିବ ନାହିଁ । ଏ ବ୍ୟବସ୍ଥାଟି ରୋଗୀ ପାଇଁ ଯେ ବିଶେଷ ପ୍ରଯୁଜ୍ୟ ତାହା ମଧ୍ୟ ମନେ ରଖିବାକୁ ହେବ । ପ୍ରତିଦିନ କିଛି କିଛି ବ୍ୟାୟାମ କରିବା ସ୍ୱାସ୍ଥ୍ୟ ପକ୍ଷରେ ଏକାନ୍ତ ଅନୁକୂଳ । ଏହା ପରିପାକ କ୍ରିୟାକୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଉତ୍ତମ ସ୍ୱାସ୍ଥ୍ୟରକ୍ଷା କରିବାରେ ସହାୟକ ହୋଇଥାଏ । ଯେଉଁ ସମସ୍ତ ବ୍ୟାୟାମ କରିବାଦ୍ୱାରା ଶ୍ୱାସ ପ୍ରଶ୍ୱାସ ପ୍ରକ୍ରିୟା ଠିକ୍ ଚାଲେ, ସେପରି ବ୍ୟାୟାମ କରିବା ଏକାନ୍ତ ଆବଶ୍ୟକ । ବୁଲଚଲ କରିବା ମଧ୍ୟ ବ୍ୟାୟାମର ଅନ୍ତର୍ଗତ । ମାତ୍ର ଏପରି ବୁଲଚଲ କରିବାକୁ ହେବ, ଯଦ୍ୱାରା ନିଜର ମାଂସପେଶୀଗୁଡ଼ିକ ଉତ୍ତମ-ରୂପେ ସଂଚାଳିତ ହୋଇପାରିବ । ରୋଗାବସ୍ଥାରେ କୌଣସି ଆୟାସସାଧ୍ୟ ବ୍ୟାୟାମ କରିବା ଅନୁଚିତ । ରୋଗୀର ମେଦବୃଦ୍ଧି, ରକ୍ତଚାପ ଆଧିକ୍ୟ ଓ ମଧୁମେହ ଥିଲେ, ଉପଯୁକ୍ତ ପଥ୍ୟ ବିଧାନ ଏକାନ୍ତ କାମ୍ୟ ।

ମେଦବୃଦ୍ଧି—ଶରୀରରେ ମେଦବୃଦ୍ଧି ଘଟିଥିଲେ ଲୁଣମିଶ୍ରିତ ଖାଦ୍ୟ ଖାଇବାକୁ ସୀମିତ କରିବା ଆବଶ୍ୟକ । ଘିଅ ତେଲମିଶ୍ରିତ ଖାଦ୍ୟ କମେଇ ଖାଇବା ହିତକର । ପ୍ରାତଃଭ୍ରମଣ ଓ ସାନ୍ଧ୍ୟଭ୍ରମଣ ମେଦବୃଦ୍ଧି କମାଇବା ପାଇଁ ଏକ ନିଶ୍ଚିତ ବ୍ୟବସ୍ଥା, ଖଟାରସଯୁକ୍ତ ଫଳ ବିଶେଷତଃ ଫଳରସ ଏଥିପାଇଁ ଏକାନ୍ତ ଉପକାରୀ, ଶୀତଳ ଜଳରେ ସ୍ନାନ ମଧ୍ୟ ମେଦନାଶକ । ଘିଅ ତେଲ ଲହୁଣୀ ମେଦସ୍ୱୀ ଲୋକଙ୍କ ପକ୍ଷରେ ଏକାନ୍ତ ଅହିତକର । ତଦ୍ୱାରା ହୃତ୍‌ଧମନୀରୋଧଜନିତ ହୃତରୋଗ ହୋଇଥାଏ ।

ରକ୍ତଚାପ—ଯେଉଁମାନଙ୍କର ରକ୍ତଚାପର ମାତ୍ରା ଅଧିକ ଅଛି, ସେମାନେ ସର୍ବଦା ଲୁଣ ବିହୀନ ଖାଦ୍ୟଖାଇବା ଆବଶ୍ୟକ । ଚାହା, କଫି ଏବଂ କୌଣସି ପ୍ରକାର ମାଦକ, ସୁରାପାନ ସର୍ବତୋଭାବେ ହାନିକର । ରକ୍ତଚାପ ରୋଗୀଙ୍କ ପକ୍ଷରେ ଖଟାରସଯୁକ୍ତ ଫଳ ଏକାନ୍ତ ଉପକାରୀ । ଏହି ରୋଗରେ ଖାଇବା ସମୟ ମଧ୍ୟରେ ପାଣି ନ ପିଇ ଖାଇସାରିବାର ଅଧଘଣ୍ଟା ପରେ ପାଣି ପିଇବା ଅଭ୍ୟାସ କଲେ ରକ୍ତଚାପ ନିୟନ୍ତ୍ରିତ ହୋଇଥାଏ । ଲୁଣ ପଡ଼ି ନ ଥିବା ଖାଦ୍ୟ ଖାଇବାର ଅଭ୍ୟାସ କଲେ ରକ୍ତଚାପାଧିକ୍ୟ, ବୃକ୍‌କାମୟ (ନେଫ୍ରାଇଟିସ) ଉଦରରୋଗ, ଶୋଥରୋଗ, ଧମନୀରୋଧଜନିତ ହୃତ୍‌ରୋଗରୁ ନିଷ୍କୃତି ମିଳିଥାଏ ।

ମଧୁମେହ (ଡାଇବେଟିସ)—ଏହି ରୋଗର ରୋଗୀ ସର୍ବଥା ପରିମିତ ଖାଦ୍ୟ ଗ୍ରହଣ କରିବା ଆବଶ୍ୟକ ।

ଅନ୍ତ୍ରକ୍ଷତ :—ଦୁଧ, ଦୁଧଛେନା, ଲହୁଣୀମିଶା ଖାଦ୍ୟ ଖାଇବାଦ୍ୱାରା ଅନ୍ତ୍ରକ୍ଷତ ଦୂର କରିବାରେ ସହାୟକ ହୋଇଥାଏ । ଏହି ପଥ୍ୟ ଯୋଗୁଁ ଶୂଳର ବେଦନା ଅନେକାଂଶରେ ଶାନ୍ତ ହୋଇଥାଏ । ଖାଦ୍ୟରେ ଦୁଧ ଖାଇବାଦ୍ୱାରା, ଦୁଧର କ୍ଷାରୀୟ ଗୁଣ ହେତୁ ଖାଦ୍ୟର ଅମ୍ଳତା ନାଶ କରିବାରେ ସହାୟକ ହୋଇଥାଏ। ଏଥିରେ ଛେନାଜାତୀୟ ଓ

ଚର୍ବିଜାତୀୟ ଖାଦ୍ୟସାର ଥାଏ । ଅନ୍ତ୍ରକ୍ଷତ ରୋଗରେ ଏହି ଜାତୀୟ ଖାଦ୍ୟ ବ୍ୟବହାର କରିବା ଏକାନ୍ତ ଆବଶ୍ୟକ । ମଦ୍ୟପାନ ଅନ୍ତ୍ରକ୍ଷତ ରୋଗରେ ସର୍ବଥା ପରିତ୍ୟାଜ୍ୟ । ଧୂମପାନ, ଉତ୍ତେଜକ ଖାଦ୍ୟ, ଲଙ୍କା, ସୋରିଷ, ବିଶେଷ ମସଲାଯୁକ୍ତ ଅନ୍ତ୍ରକ୍ଷତ ରୋଗୀ ପକ୍ଷରେ ଏକାନ୍ତ ହାନିକର ।
ଯଥାର୍ଥ ପରିମାଣରେ ଦୁଧ ଦେଇ ତିଆରି ହୋଇଥିବା ଗ୍ରୁହା ବା କର୍ଫି ଦିନରେ ଥରେ ଲେଖାଏ ଖିଆଯାଇପାରେ ।

ମଦାତ୍ୟୟ

ଖାଇବା ପୂର୍ବରୁ ଜଳସହିତ ସାମାନ୍ୟ ପରିମାଣରେ ମଦ୍ୟପାନ କଲେ, ତାହା କ୍ଷୁଧା ବୃଦ୍ଧି କରେ ଏବଂ ପୁଷ୍ଟିହୀନତା ଦୂର କରେ । ବୃଦ୍ଧାବସ୍ଥାରେ ଶୋଇବା ପୂର୍ବରୁ ଜଳମିଶ୍ରିତ ସାମାନ୍ୟ ପରିମାଣରେ ମଦ୍ୟ ବ୍ୟବହାର କଲେ, ତାହା ଶରୀରକୁ ସମ୍ପୂର୍ଣ୍ଣ ବିଶ୍ରାମ ଦିଏ । ଥଣ୍ଡା ଅଞ୍ଚଳରୁ ଫେରିଥିବା ଲୋକ କିଞ୍ଚିତ ପରିମାଣରେ ମଦ୍ୟପାନ କଲେ ତାହା ଉପକାରକ ହୋଇଥାଏ । ମାତ୍ର ମଦ୍ୟପାନ କରି ଥଣ୍ଡାରେ ବୁଲାବୁଲି କରିବା କ୍ଷତିକାରକ । ମଦ୍ୟ, ଚର୍ବି ଓ ଛେନାଜାତୀୟ ଖାଦ୍ୟର ପରିପୂରକ ଭାବରେ କାର୍ଯ୍ୟ କରିଥାଏ । ଏହାର ମଧ୍ୟ ଶରୀରରେ କାଲୋରି ଦେବାର ସାମର୍ଥ୍ୟ ଅଛି । ଉପଯୁକ୍ତ ଖାଦ୍ୟ ନ ଖାଇ ମଦ୍ୟପାନ କଲେ ଯକୃତ୍ ଓ ପରିପାକ ପ୍ରକ୍ରିୟାର କ୍ଷତିସାଧିତ ହୋଇ-ଥାଏ । ନିୟମିତ ମଦ୍ୟପାନ କରିବାଦ୍ୱାରା ତାହା ଏକ ମନ୍ଦ ଅଭ୍ୟାସରେ ପରିଣତ ହୋଇଯାଏ ଏବଂ ଶରୀରରେ ମଦ୍ୟ ସହନତା ବଢ଼ିଯାଏ । ଫଳରେ ମଦ୍ୟ ସୁଗୁଣ ଲାଭ କରିବା ଆଉ ସମ୍ଭବପର ହୁଏ ନାହିଁ ।

ଧୂମପାନ—

ଧୂଆଁପତ୍ରର ନିକୋଟିନ୍ ଉପାଦାନ ଯୋଗୁଁ ଆପାତତଃ ଶାରୀରିକ ଉତ୍ତେଜନା ଜନ୍ମେ । ମାତ୍ର ଏହାର ଅଭ୍ୟାସ ଏକ ମନ୍ଦ ଅଭ୍ୟାସ ବୋଲି ଧରିନେବାକୁ ହେବ । ଯେଉଁମାନେ ଅଭ୍ୟାସ କରି ଧୂମପାନ କରନ୍ତି, ସେମାନେ ଶ୍ୱାସପ୍ରକ୍ରିୟା ଜନିତ ବିକୃତି ଯଥା—ଶ୍ୱସନିକା ପ୍ରଦାହ, ଶ୍ୱାସ, ଯକ୍ଷ୍ମା, ଶ୍ୱାସନଳୀ ସଞ୍ଜାତ ଅର୍ବୁଦ (କାରସୋନାମା) ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଯେଉଁମାନେ ବିଡ଼ି, ସିଗାରେଟର ନିଆଁଗୁଳାକୁ ପାଟିଭିତରେ ପୁରାଇ ଧୂମପାନ କରନ୍ତି, ସେମାନଙ୍କର ଶୋଷୋକ୍ତ ରୋଗଟି ବିଶେଷ ଭାବରେ ହୋଇଥାଏ । ଧୂମପାନ ଅଭ୍ୟସ୍ତ ବ୍ୟକ୍ତିଙ୍କର ହୃତ୍‌ରକ୍ତବାହିକା ରକ୍ତସ୍ଖଳନ ( Coronary thrombosis ) ପାଦାଙ୍ଗୁଳି କୋଥ ଅନ୍ତ୍ରକ୍ଷତ ଓ ବିବିଧ ଚକ୍ଷୁରୋଗ ହୋଇଥାଏ ।

ପାନ ସହିତ ଧୂଆଁପତ୍ରର ସେବନ—

ପାନ ସହିତ ଗୁଣ୍ଡି, ଜରଦା, କିମାମ ଭାବରେ ଧୂଆଁପତ୍ର ବ୍ୟବହାର କରିବା ଦ୍ୱାରା ଜିଭ, ଦନ୍ତମାଢ଼ିର କ୍ଷତ, କ୍ୟାନ୍‌ସର ରୋଗ ହେବାର ସମ୍ଭବପରତା ଥାଏ ।

ଏହି ହେତୁରୁ ଅନେକଙ୍କର ଅନ୍ତକ୍ଷତ ହୋଇଥାଏ । ଧୂଆଁପତ୍ରରେ ଥିବା ନିକୋଟିନ ବିଷ । ଜିଭର ଶ୍ଳୈଷ୍ମିକ ଝିଲ୍ଲୀ ମାଧ୍ୟମରେ ଶରୀରରେ ପ୍ରବେଶ କରି ନାନା ରୋଗ ସୃଷ୍ଟି କରିଥାଏ ।

ଗ୍ରୀହା ଓ କଫି—

ଗ୍ରୀହାରେ କେଫିନ୍ ଥିଓଫାଇଲିନ୍, ଥିଓବ୍ରୋମିନ ନାମକ ଉପାଦାନ ଥାଏ । କେଫିନ୍ ଶିରଃଶୂଳ ଦୂର କରିଥାଏ । ଏହା ସ୍ନାୟୁ କେନ୍ଦ୍ରରେ କିଞ୍ଚିତ ଉତ୍ତେଜନା ସାମୟିକ ଭାବରେ ସୃଷ୍ଟି କରିଥାଏ । ଗ୍ରୀହାରେ ଥିବା ଥିଓଫାଇଲିନ୍ ଓ ଥିଓବ୍ରୋମିନ୍‌ର ବିଶେଷ ଔଷଧୀୟ ବ୍ୟବହାର ନାହିଁ । ମାତ୍ର ଏଗୁଡ଼ିକ ହୃତ୍‌କ୍ରିୟାର ଉତ୍ତେଜନା ସୃଷ୍ଟି କରିଥାନ୍ତି ଏବଂ ମୂତ୍ର ପ୍ରଜନନ ବଢ଼ାଇଥାନ୍ତି । ଗୋଟିଏ କପ୍ ଗ୍ରୀହାରେ ୧୫୦ ମି. ଗ୍ରା. କେଫିନ୍ ଥାଏ ।

ଅତ୍ୟଧିକ ଗ୍ରୀହା କଫି ପାନ—

ଗ୍ରୀହାରେ ମିଶି ରହିଥିବା କେଫିନ୍ ପୃଥକୀକୃତ କେଫିନ୍ ପରି କ୍ଷତିକାରକ ନୁହେଁ । ଉଦାହରଣସ୍ୱରୂପ ଏପି. ସି. ବଟିକା । ଗ୍ରୀହାରେ ଟ୍ୟାନିନ୍ ନାମକ ଅନ୍ୟ ଏକ ରାସାୟନିକ ଉପାଦାନ ଅଛି । ଏହା ପ୍ରୋଟିନ୍ ଅବକ୍ଷୟକାରକ । ଏହାଦ୍ୱାରା ପରିପାକ ପ୍ରକ୍ରିୟାର ବିଶୃଂଖଳା ଜନ୍ମିଥାଏ । ମାତ୍ର ଦୁଧ, ଲହୁଣୀ ମିଶାଇବାଦ୍ୱାରା ଟ୍ୟାନିନ୍‌ଜନିତ ଦୋଷ ଦୂରୀଭୂତ ହୋଇଥାଏ । ବାରବର୍ଷରୁ ତଳ ବୟସର ପିଲାମାନଙ୍କ ପାଇଁ ଏହା କ୍ଷତିକାରକ । କାରଣ ସେମାନଙ୍କର ସ୍ନାୟୁ କେନ୍ଦ୍ରକୁ ଏହା ଅଯଥା ଉତ୍ତେଜିତ କରିଥାଏ । ଅନ୍ତକ୍ଷତ ରକ୍ତଚାପାଧିକ୍ୟ ଓ ପରିପାକ ସମ୍ବନ୍ଧୀୟ ରୋଗୀମାନଙ୍କ ପକ୍ଷରେ ଏହା କୌଣସିମତେ ଉପଯୋଗୀ ନୁହେଁ ।

କଫିରେ କେଫିନ୍ ଥାଏ । ଏହାର ଗୁଣ ଅନେକାଂଶରେ ଗ୍ରୀହାପରି । କିନ୍ତୁ ତହିଁରେ ଏକପ୍ରକାର ଉଡ୍ଡନଶୀଳ ତୈଳାଂଶ ଅଛି । ସେଥିପାଇଁ କଫିରୁ ଏକପ୍ରକାର ସ୍ୱତନ୍ତ୍ର ସୁଗନ୍ଧ ମିଳିଥାଏ । ଏହି ହେତୁ କଫି କେତେକାଂଶରେ କ୍ଷୁଧାକାରକ । କଫିରେ ଟ୍ୟାନିନ୍ ନ ଥାଏ । ଯାହା ହେଉ ଭଲ ମନ୍ଦ ଗୁଣ ଏଥିରେ ଥାଏ, ଗ୍ରୀହାକୁ ସୁସ୍ୱାଦୁ କରିବାପାଇଁ ଏଥିରେ ଚିନି ମିଶାଯାଇଥାଏ ସାଧାରଣତଃ ରକ୍ତଚାପ ଆଧିକ୍ୟ ଥିବା ରୋଗୀମାନଙ୍କ ପକ୍ଷରେ ଦିନକୁ କପେ ଦଇକପ ଗ୍ରୀହା ବା କଫି ଖାଇବା ସେପରି କ୍ଷତିକାରକ ନୁହେଁ ।

ପରିପାକ·

ସାଲଫୋସ୍ ପରିପାକଜନିତ ରୋଗରେ ବିଶେଷ ଉପକାରୀ । ଯାହାର କ୍ଷୁଧାମାନ୍ଦ୍ୟ ଅଛି, ତା ପକ୍ଷରେ ଗ୍ୟାଷ୍ଟ୍ରୋମିନ୍ ବିଶେଷ ହିତକାରକ । ଅନେକ ସମୟରେ ପରିପାକ କ୍ରିୟାର ବିକୃତି ଅମ୍ଳାଧିକ୍ୟ ଯୋଗୁଁ ହୋଇଥାଏ । ସେ କ୍ଷେତ୍ରରେ ମ୍ୟାଗନିନ୍ ସକାଳେ ଓ ସନ୍ଧ୍ୟାରେ ଖାଇବାର ଅଧଘଣ୍ଟା ପୂର୍ବରୁ ଖାଇଲେ ବିଶେଷ

ସୁଫଳ ମିଳିଥାଏ । ପେଟ ଫାମିବା, ଶୂଳ ମାରିବା, ପେଟ ଦରଜ ହେବା ଓ ପରିପାକଗତ ଦୋଷ ଦେଖାଦେବା ବିଶେଷତଃ ଏହି ସମସ୍ତ ଖାଇବା ପରେ ଓ ରାତିରେ ବିଶେଷ ଭାବରେ ହୋଇଥାଏ । ସେ ସ୍ଥଳରେ ଉପରୋକ୍ତ ଔଷଧ ସମୂହ ସୁଫଳ ଦେଖାଇଥାଏ ।

ସାତ୍ମୀକରଣ—

ଜଣେ ଲୋକ ବେଶିଗଡ଼ାଏ ଖାଇପାରେ ଏବଂ ତାର ଠିକ୍ ହଜମ ହେଉଛି ବୋଲି କହିପାରେ, କିନ୍ତୁ ବାସ୍ତବରେ ତାକୁ ଦେଖିଲେ ତଦନୁଯାୟୀ ସୁସ୍ଥସବଳ ଓ ତେଜୀୟାନ ଦେଖାଯାଉ ନାହିଁ । ଏହାର କାରଣ ସେ ଯାହା ଖାଉଛି, ତାହା ତା ଶରୀରରେ ଯଥାର୍ଥ ଭାବରେ ମିଶିପାରୁ ନାହିଁ । ଏପରି ସ୍ଥଳରେ ଆଲବୋସାଙ୍ଗ ସଙ୍ଗେ ଗ୍ୟାଷ୍ଟ୍ରୋମିନ୍ ବ୍ୟବହାର କରିବାଦ୍ୱାରା ଖାଦ୍ୟ ପଦାର୍ଥର ସାତ୍ମୀକରଣ କାର୍ଯ୍ୟ ଠିକ୍ ଗ୍ଲେ, ଲୋକ ସୁସ୍ଥ ସବଳ ଓ ତେଜୀୟାନ ଦେଖାଯାଏ ।

ଅନୁଭବ ପ୍ରବଣତା-

ସାଧାରଣ ଲୋକ ବ୍ୟବହାର କରୁଥିବା ଖାଦ୍ୟ ଓ ଔଷଧ କେତେକଙ୍କ ପକ୍ଷରେ ଅସହ୍ୟ ହୋଇଉଠେ । ସେପରି ଲୋକଙ୍କପାଇଁ ଗ୍ୟାଷ୍ଟ୍ରୋମନ୍ ବିଶେଷ ଉପଯୋଗୀ ।

କମିକ ସହନକରଣ—

ଯେଉଁମାନଙ୍କଠାରେ ସାଧାରଣ ଔଷଧ ଓ ଖାଦ୍ୟ ବିଶେଷ କାରଣ ନ ଥାଇ ପ୍ରତିକ୍ରିୟା ସୃଷ୍ଟି କରେ, ସେମାନେ ନିର୍ଦ୍ଦିଷ୍ଟ ପରିମାଣରୁ ଅଳ୍ପ ଅଳ୍ପ ପରିମାଣରେ ସେବନ-କଲେ, ସେମାନଙ୍କର କ୍ରମଶଃ ସହନଶୀଳତା ଜନ୍ମେ । କ୍ରମଶଃ ସେମାନେ ନିର୍ଦ୍ଦିଷ୍ଟ ପରିମାଣର ଖାଦ୍ୟ ଓ ଔଷଧ ବ୍ୟବହାର କରିବାକୁ ସମର୍ଥ ହୁଅନ୍ତି ।

ବହିଷ୍କରଣ-

ପରିପାକ ପ୍ରକ୍ରିୟା ସଙ୍ଗେ ମଳ ନିଃସରଣ କ୍ରିୟା ଅଙ୍ଗାଙ୍ଗୀ ଭାବରେ ସମ୍ପୃକ୍ତ । ଏହି ମଳନିଃସରଣ କ୍ରିୟା ଠିକ୍‌ଭାବେ ନ ଗ୍ଲିଲେ ତାହାକୁ କୋଷ୍ଠବଦ୍ଧତା କୁହାଯାଇ-ଥାଏ ।

ସୁକୁମାର ବ୍ୟକ୍ତି, ଗର୍ଭବତୀ ସ୍ତ୍ରୀ ବା ସ୍ତନ୍ୟଦାୟିନୀ ମାଆ, ଦୁର୍ବଳ ବ୍ୟକ୍ତିମାନଙ୍କର କୋଷ୍ଠବଦ୍ଧତା ଥିଲେ, ତାହା ସାବଧାନତା ସହକାରେ ପ୍ରତିକାର କରିବା ଆବଶ୍ୟକ । ମଳତ୍ୟାଗ କ୍ରିୟାକୁ ସୁନିୟନ୍ତ୍ରିତ ଓ ନିୟମିତ କରାଗଲେ, ତାହା ପରିପାକ କ୍ରିୟାକୁ ଠିକ୍ କରିବା ସଙ୍ଗେ ସଙ୍ଗେ ସାତ୍ମୀକରଣ ପ୍ରକ୍ରିୟାକୁ ଉନ୍ନତ କରାଇଥାଏ । ତୀବ୍ର ବିରେଚନ ବ୍ୟବସ୍ଥା ଦ୍ୱାରା ଅନ୍ତ୍ର କ୍ଷତିସାଧିତ ହୋଇପାରେ । ଏହା ସଙ୍ଗେ ସଙ୍ଗେ ଶରୀରରେ ନିର୍ଜଳତା ଓ କ୍ରୁରକୋଷ୍ଠତା ଦେଖାଯାଇପାରେ ଏବଂ ତଦ୍ୱାରା ଶାରୀରିକ ପୁଷ୍ଟି ବାଧାପ୍ରାପ୍ତ ହୋଇପାରେ ।

ଏପରିସ୍ଥଳେ ଗ୍ୟାଷ୍ଟ୍ରୋମିନ୍ ସଙ୍ଗେ ଆଲବୋସାଙ୍ଗର ପ୍ରୟୋଗ ସ୍ଥଳ-ବିଶେଷରେ ସ୍ୱୋଲକ୍ସର ପ୍ରୟୋଗ କଲେ ପୁରୁଣା କୋଷ୍ଠକାଠିନ୍ୟ ରୋଗ ସହଜରେ

ଦୂରୀଭୂତ ହୋଇଥାଏ ଏବଂ ବିରେଚକ ଔଷଧର କୌଣସି କୁଫଳ ଦେଖାଯାଏ ନାହିଁ । ଏହି ବ୍ୟବସ୍ଥା ଦ୍ୱାରା ଖାଦ୍ୟର ପୁଷ୍ଟିକାରିତା ଗୁଣ କୌଣସି ମତେ ବାଧାପ୍ରାପ୍ତ ହୁଏ ନାହିଁ । ଅର୍ଶଜନିତ କୋଷ୍ଠବଦ୍ଧତା ଅବସ୍ଥାରେ କେବଳ ସ୍ୱୋଲ୍ଲକସ ଉତ୍ତମ ଫଳ ଦେଖାଇଥାଏ ।

ଅନିୟମିତ ଅଭ୍ୟାସ ହେତୁ ଶିଶୁ ତଥା ଯୁବକଗଣ ମଧ୍ୟ ଅଜୀର୍ଣ୍ଣ ତଥା କୋଷ୍ଠକାଠିନ୍ୟ ରୋଗ ଭୋଗିଥାନ୍ତି । ଏପରି ସ୍ଥଳେ ଟ୍ୟାକସିନ୍ ଉତ୍ତମ କାର୍ଯ୍ୟ କରିଥାଏ ।

ସ୍ନାୟବିକ ବିକାର -

ମନୁଷ୍ୟ ଶରୀରର ସ୍ନାୟବିକ ପ୍ରକ୍ରିୟା ଶରୀରର ଯାବତୀୟ ପ୍ରକ୍ରିୟା ଯଥା— ପରିପାକ ପ୍ରକ୍ରିୟା, ଶ୍ୱାସସଂବହନ ପ୍ରକ୍ରିୟା, ରକ୍ତ ସଂବହନ ପ୍ରକ୍ରିୟା ଓ ମୂତ୍ର ପ୍ରଜନନ ପ୍ରକ୍ରିୟା ସଙ୍ଗେ ଓତଃପ୍ରୋତଃ ଭାବେ ସମ୍ପୃକ୍ତ । ଏହାଦ୍ୱାରା ମଣିଷର ଦେଖିବା, ଶୁଣିବା, ଶୁଙ୍ଘିବା ଶୈତ୍ୟ ଓ ଉଷ୍ଣତା ଗୁଣ ଅନୁଭବ କରିବା ସମ୍ଭବପର ହୋଇଥାଏ । ଆତ୍ମ-ନିୟନ୍ତ୍ରକ ସ୍ନାୟୁମଣ୍ଡଳୀ ମଧ୍ୟସ୍ଥ ଉତ୍ପନ୍ନ ସ୍ୱତନ୍ତ୍ର ସ୍ନାୟୁ ହୃତ୍ପିଣ୍ଡ, ଆମାଶୟ, ଅନ୍ତ୍ରମଣ୍ଡଳୀ, ଆଖି, କାନର କ୍ରିୟାକୁ ନିୟନ୍ତ୍ରଣ କରିଥାଏ । ଏଣୁ ସ୍ନାୟବିକ କ୍ରିୟାର କୌଣସି ଆଘାତ ଆସିଲେ ବା କୌଣସି ଜୀବାଣୁ ସଂକ୍ରମଣ ଦେଖାଗଲେ ବା କୌଣସି ଔଷଧର ପ୍ରତିକ୍ରିୟା ଘଟିଲେ ତାର ପ୍ରଭାବ ସ୍ନାୟବିକ କେନ୍ଦ୍ର ତଥା ନିର୍ଦ୍ଦିଷ୍ଟ ସ୍ନାୟୁ ଓ ଉକ୍ତ ସ୍ନାୟୁ ଯେଉଁ ପ୍ରକ୍ରିୟା ସହିତ ସମ୍ପୃକ୍ତ ହେଉଛି, ସେଠାରେ ତାର ପ୍ରଭାବ ପଡ଼େ । ଅନୁରୂପ-ଭାବେ ଶାରୀରିକ ଅନ୍ୟ ଏକ ପ୍ରକ୍ରିୟାର ବିକୃତି ଘଟିଲେ, ଯଥା ପରିପାକ ପ୍ରକ୍ରିୟାର କୌଣସି ବିକୃତି ଦେଖାଗଲେ, ତାର ପ୍ରଭାବ ସ୍ନାୟୁକେନ୍ଦ୍ର ଉପରେ ପଡ଼େ । ଭାବାତ୍ମକ ମାନସିକ ବିକ୍ଷିପ୍ତି, କୋଷ୍ଠବଦ୍ଧତା ଏବଂ ଅନ୍ୟ କୌଣସି ଶାରୀରିକ ବିକୃତିକାରକ କାରଣ ଦେଖାଗଲେ, ତଦ୍ୱାରା ସାୟୁକେନ୍ଦ୍ରର କାର୍ଯ୍ୟ ମଧ୍ୟ ପ୍ରଭାବିତ ହୁଏ ।

ପୁଷ୍ଟିଜନିତ କୌଣସି ବିକାର ଦେଖାଗଲେ, ସେ ସ୍ଥଳରେ ଆଲବୋସାଙ୍ଗ ବ୍ୟବହାର କରିବା ସଙ୍ଗେ ଉପଯୁକ୍ତ ପଥ୍ୟ ବ୍ୟବସ୍ଥା ଆବଶ୍ୟକ । କୋଷ୍ଠବଦ୍ଧତା ଥିଲେ ସଲଫୋସ ବା ସ୍ୱୋଲକ୍ସ ପ୍ରୟୋଗ ଉତ୍ତମ ଗୁଣ ଦେଖାଇଥାଏ । ଭାବାତ୍ମକ ବିକୃତି ସ୍ଥଳରେ ଭାଇଟାଲ ଏସେନ୍ସର ପ୍ରୟୋଗ ବିଶେଷ ହିତକାରକ ହୋଇଥାଏ ।

ଯାବତୀୟ ସ୍ନାୟୁ ଉତ୍ତେଜନା କୋଷ୍ଠବଦ୍ଧତା ଥିବା ସ୍ଥଳରେ ଲଘୁ, ତରଳ ଖାଦ୍ୟ, ଫଳରସ ବ୍ୟବହାର କରିବା ବିଶେଷ ଉପଯୋଗୀ ଭାବରେ ପ୍ରମାଣିତ ।

ମାନସିକ ବିକ୍ଷିପ୍ତିର ପ୍ରତିକାର ପାଇଁ ସ୍ୱତନ୍ତ୍ର ଧ୍ୟାନ ଦେବା ଆବଶ୍ୟକ । ସେ ସ୍ଥଳରେ ଆଲବୋସାଙ୍ଗ ସହିତ ଭାଇଟାଲ ଏସେନସ ପ୍ରୟୋଗ କରିବା ବିଧେୟ । ଭାଇଟାଲ ଏସେନ୍ସ ଅଳ୍ପମାତ୍ରାରେ ଶୋଇବା ପୂର୍ବରୁ ବ୍ୟବହାର କରିବା ପାଇଁ ପରାମର୍ଶ ଦିଆଯାଇପାରେ । ସାଧାରଣତଃ ଆଲବୋସାଙ୍ଗ ସହିତ ଭାଇଟାଲ ଏସେନ୍ସ

ଗୋଟିଏ ବଟିକା ପ୍ରୟୋଗ ଯଥେଷ୍ଟ । ଯେଉଁଠାରେ ଅବସ୍ଥା ଜଟିଳ ସେ ସ୍ଥଳରେ ଦୁଇଟି ବଟିକା ବ୍ୟବହାର କରାଯାଇପାରେ । ଏଥି ସଙ୍ଗେ ତରଳ ଖାଦ୍ୟ ପ୍ରୟୋଗ କଲେ ଆଶାତୀତ ଫଳ ମିଳିଥାଏ ।

ପ୍ରଳାପ—

ସାଧାରଣତଃ ଜ୍ୱର ରୋଗରେ ପ୍ରଳାପ ହେଉଛି ଏକ ସହଯୋଗୀ ଉପସର୍ଗ, ଏଣୁ ପ୍ରଳାପର ନିରାକରଣ ସମୟରେ ମୂଳ ରୋଗର ନିରାକରଣ ମଧ୍ୟ ଆବଶ୍ୟକ । କାରଣ ପ୍ରଳାପ ହେଉଛି ମୂଳ ରୋଗର ଉପସର୍ଗ ମାତ୍ର । ଏ ସ୍ଥଳରେ ଭାଇଟାଲ ଏସେନ୍ସ ହେଉଛି, ସୁନିର୍ବାଚିତ ଔଷଧ । ଶିଶମାନଙ୍କର ଏ ଜାତୀୟ ଉପସର୍ଗ ସ୍ଥଳରେ ଚିନିୟମ୍‌କୋ, ଭାଇଟାଲ ଏସେନ୍ସ ସହିତ ପ୍ରୟୋଗ କରିବା ଆବଶ୍ୟକ ।

ଆକ୍ଷେପ—

ଆକ୍ଷେପ ସ୍ଥଳରେ ଭାଇଟାଲ ଏସେନସ ବିଶେଷ ଫଳପ୍ରଦ । ଯେଉଁ ସ୍ଥଳରେ ଏହି ଆକ୍ଷେପ ସହସା ଆକ୍ରମଣ କରିଥାଏ, ସେ ସ୍ଥଳରେ ଅଗରକୋ ପ୍ରୟୋଗ ଏକାନ୍ତ କାମ୍ୟ । ସେହି ରୋଗୀମାନଙ୍କର ଯେପରି ସୁନିଦ୍ରା ହୁଏ, ସେଥିପ୍ରତି ଧ୍ୟାନ ରଖିବା ଆବଶ୍ୟକ ।

ନିଦ୍ରାହୀନତା—

ନିଦ୍ରାହୀନତା ସାଧାରଣତଃ ପରିପାକ ପ୍ରକ୍ରିୟାର ଦୋଷ, ଚିନ୍ତା, ଶୋକ ମାନସିକ ବିକ୍ଷିପ୍ତି ଯୋଗୁଁ ଜନ୍ମିଥାଏ । କେତେକ ସ୍ଥଳରେ ଅତ୍ୟଧିକ ଧୂମପାନ ଅତ୍ୟଧିକ ଗୁହା, କଫି, ପାନ ଯୋଗୁଁ ନିଦ୍ରାହାନି ଘଟିଥାଏ । ଏହା ବ୍ୟତୀତ ଯେକୌଣସି ରୋଗ ଯନ୍ତ୍ରଣା ହେତୁ ନିଦରେ ବ୍ୟାଘାତ ଜନ୍ମିଥାଏ ।

ରକ୍ତଚାପର ଆଧିକ୍ୟ ହେତୁ ଯେ ନିଦ୍ରାହୀନତା ଘଟେ, ଏକଥା ବିଶେଷଭାବେ ଧ୍ୟାନ ରଖିବା ଆବଶ୍ୟକ । ଏଣୁ ନିଦ୍ରାହୀନତା ଯେଉଁ କାରଣରୁ ହୋଇଛି, ତାହା ନିର୍ଣ୍ଣୟ କରି ତଦନୁଯାୟୀ ଚିକିତ୍ସା ବିଧାନ କରିବା, ନିଦ୍ରାହୀନତାର ପ୍ରଥମ ଚିକିତ୍ସା । ହଠାତ୍ ଶାମକ ବା ନିଦ୍ରାକାରକ ଔଷଧ ପ୍ରୟୋଗ କରିବା ଅନୁଚିତ । କାରଣ ଏହାଦ୍ୱାରା ଗୋଟିଏ ବଦଭ୍ୟାସ ବଢ଼ିଯିବ ।

ଭାଇଟାଲ ଏସେନ୍ସ, ସ୍ନାୟୁଶୂଳ, ନିଦ୍ରାହୀନତା ସ୍ଥଳରେ ଏକମାତ୍ର ନିଶ୍ଚିତ ଔଷଧ । ଏଥିରୁ ଗୋଟିଏ ମାତ୍ରା ପାନ ଶୋଇବା ପୂର୍ବରୁ ବ୍ୟବହାର କଲେ ମାନସିକ ଅସ୍ଥିରତା, ଶାନ୍ତି ଓ ଅବସାଦ ଦୂର କରିଥାଏ ଏବଂ ସୁସୁପ୍ତି ଆଣିଦିଏ ।

ସ୍ନାୟୁଶୂଳ ଓ ବାହ୍ୟିକବେଦନା—

ଦନ୍ତଶୂଳ, କର୍ଣ୍ଣଶୂଳ, ଶିରଃଶୂଳ, ମଜ୍ଜାଗତଶୂଳ, ଗଣ୍ଠିବ୍ୟଥା ପ୍ରଭୃତି ବେଦନା ଦାୟକ ଅବସ୍ଥାରେ ଡେସିଲ ଏକ ନିଶ୍ଚିତ ଔଷଧ । ଏହି ସମସ୍ତ ବେଦନା ସହିତ ନିଦ୍ରାହୀନତା

ଥିଲେ, ✻ ଡେସିଲ ସହିତ ଭାଇଟାଲ ଏସେନ୍ସ ପ୍ରୟୋଗ କଲେ ବିଶେଷ ସୁଫଳ ମିଳିଥାଏ ।

ସ୍ନାୟବିକ ଦୁର୍ବଳତା—

ଶାରୀରିକ ଓ ମାନସିକ କ୍ଷୟଯୋଗୁଁ ସାଧାରଣତଃ ସ୍ନାୟବିକ ଦୁର୍ବଳତା ଜନ୍ମିଥାଏ । ଏହାଦ୍ୱାରା ବିଶେଷଭାବେ ଶାରୀରିକ ଶ୍ରାନ୍ତି ଜନ୍ମିଥାଏ । କୌଣସି କାରଣରୁ ରକ୍ତସ୍ରାବ, ପୁରୁଣାରୋଗ, ପୁରୁଣା କ୍ଷତଜନିତ ଆଭ୍ୟନ୍ତରିକ ପୂତି, ବିଫଳ ଯା ଓ ପରିପାକ ଦୋଷ ହେତୁ ସ୍ନାୟବିକ ଦୁର୍ବଳତା ଦେଖାଦେଇଥାଏ । ଏଣୁ ଏପରିସ୍ଥଳେ ଏହି ଅବସ୍ଥାଟିର ମୂଳ କାରଣ କଅଣ ତାହା ନିର୍ଦ୍ଧାରଣ କରିବା ଆବଶ୍ୟକ । କ୍ଷୀଣ ସାସ୍ଥ୍ୟ, ଅତ୍ୟଧିକ ଶାରୀରିକ ଓ ମାନସିକ ଶ୍ରାନ୍ତି, ଚିନ୍ତା, ଶୋକ, ମୁଣ୍ଡବ୍ୟଥା, ନିର୍ଦ୍ଦିଷ୍ଟ ପୀଡ଼ା ମଧ୍ୟ ଏହି ରୋଗରେ ଦେଖାଦେଇଥାଏ । ଏପରି ଅବସ୍ଥାରେ ରୋଗୀର ସ୍ୱାସ୍ଥ୍ୟ ଭାଙ୍ଗିପଡ଼େ । ପୁଷ୍ଟିକାରିକତା ବାଧା ପାଏ । ପରିପାକ ପ୍ରକ୍ରିୟାରେ ବିଶୃଂଖଳା ଦେଖାଯାଏ । ରୋଗୀ ବିଭିନ୍ନ ଲକ୍ଷଣ ବର୍ଣ୍ଣନା କରେ, ଯାହାର କି ଶାରୀରିକ କାରଣ ସହଜରେ ଧରାପଡ଼େ ନାହିଁ । ଏହିପରି ଅବସ୍ଥାରେ ରୋଗୀର ପରିବେଶ ପରିବର୍ତ୍ତନ ଏକାନ୍ତ କାମ୍ୟ । ଏଥିସଙ୍ଗେ ସଙ୍ଗେ ରୋଗୀର ଖାଦ୍ୟରେ ଯେପରି ପୁଷ୍ଟିକାରିତା ବଢ଼ୁଛି ; ସେଥିପ୍ରତି ଧ୍ୟାନ ଦେବାକୁ ହୁଏ । ନିମ୍ନଲିଖିତ ବ୍ୟବସ୍ଥା ଦ୍ୱାରା ସ୍ନାୟବିକ ଦୁର୍ବଳତା ସହଜରେ ଦୂର ହୋଇଥାଏ ।

ଏହିପରି ଅବସ୍ଥାରେ ଦିନକୁ ଦୁଇଥର ଆଲବୋସାଙ୍ଗ ଦୁଧ ସହ ସେବନ କରିବା ଆବଶ୍ୟକ । ଭୋଜନ ପରେ ଗାଷ୍ଟ୍ରୋମୋନ ଓ ଶୋଇବା ସମୟରେ ଭାଇଟାଲ ଏସେନ୍ସ ପ୍ରୟୋଗ କଲେ ଭଲ ଫଳ ମିଳିଥାଏ । ଏଥିସଙ୍ଗେ ଆଲବୋସାଙ୍ଗ ବ୍ୟବହାର କଲେ ଯୋଗବାହୀ କାର୍ଯ୍ୟ କରିଥାଏ । ଯଦି ରୋଗୀର ପରିପାକ ଶକ୍ତି କ୍ଷୀଣ ସେ ସ୍ଥଳେ ସଲଫୋସ ଗୋଟିଏ ବଟିକା ଭୋଜନ ପୂର୍ବରୁ ଦେବା ଆବଶ୍ୟକ । ଯଦି କୋଷ୍ଠବଦ୍ଧତା ଥାଏ ତାହାହେଲେ ସ୍ୱୋଲକ୍ସ ବ୍ୟବହାର ଅଧିକ ଉପକାର ଦେଖାଇ-ଥାଏ ।

ଅପସ୍ମାର (ହିଷ୍ଟିରିୟା)—

ଏହା ହେଉଛି, ଏକ ମାନସିକ ବିକାର, ଯେଉଁ ସ୍ଥଳରେ ରୋଗୀ ନିଜର ଭଲମନ୍ଦ ବିଗ୍ରହ ଠିକ୍ ରଖିପାରେ ନାହିଁ ଏବଂ ନିଜର ଭାବାବେଗକୁ ଚପାଇ ରଖେ । ଏହି ରୋଗରେ କୌଣସି ଶାରୀରିକ ବିକୃତି ନ ଥାଇ ମଧ୍ୟ ରୋଗର ଲକ୍ଷଣ ଶରୀର ଉପରେ ପ୍ରତିଫଳିତ ହୋଇଥାଏ । ଏହିପରି ଅବସ୍ଥାରେ ରୋଗୀର ଆବେଗ, ଅବଶୋଷ,

---

ବି. ଦ୍ର. ✻ଡେସିଲ ପରିପାକ ପ୍ରକ୍ରିୟାରେ ଉତ୍ତେଜନା ସୃଷ୍ଟି କରିଥାଏ । ଏଣୁ ପରିପାକ ପ୍ରକ୍ରିୟାରେ କୌଣସି ଦୋଷ ଥିଲେ ଡେସିଲ୍ ପ୍ରୟୋଗ କରିବା ଅନୁଚିତ ।

ମାନସିକ ଅବସାଦ, ଯେଉଁ କାରଣରୁ ଘଟିଥାଏ, ତାହା ଯଥାସମ୍ଭବ ପରିବର୍ତ୍ତନ ଓ ବିଶେଷ କାରଣର ପ୍ରତିକାର କରିବା ପ୍ରୟୋଜନ । ଏଥି ସଙ୍ଗେ ସଙ୍ଗେ ରୋଗୀର ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ପୁଷ୍ଟିକାରକ ଖାଦ୍ୟ ବ୍ୟବସ୍ଥା କରିବା ଆବଶ୍ୟକ ଏବଂ ରୋଗୀ ଯେପରି ସୁନିଦ୍ରାପାଏ ଏବଂ ଆମୋଦପ୍ରମୋଦ ପାଏ, ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ଔଷଧ ବ୍ୟବସ୍ଥା—

ଏହିପରି ଅବସ୍ଥାରେ ଭୋଜନ ପୂର୍ବରୁ ଦୁଇଥର ଅଗରକୋ ଓ ଶୋଇବା ପୂର୍ବରୁ ଭାଇଟାଲ୍ ଏସେନ୍ସ ପ୍ରୟୋଗ କଲେ ଅଧିକ ସୁଫଳ ମିଳେ । ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଆଲବୋସାଙ୍ଗ ଦିନକୁ ଦୁଇଥର ସେବନ କଲେ ପୂର୍ବୋକ୍ତ ଔଷଧଗୁଡ଼ିକ ଫଳପ୍ରଦ ହୋଇଥାନ୍ତି ।

ସନ୍ନ୍ୟାସ (ଏପିଲେପ୍ସି)—

ଏହାର ବହୁ ପ୍ରକାର ଭେଦ ଅଛି । ସ୍ଥୂଳତଃ ଏହି ରୋଗକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ଯଥା ଉଗ୍ର (Grandmal) ଲଘୁ (Petitmal) । ଏହା ଯେ କୌଣସି ବୟସର ବ୍ୟକ୍ତିଙ୍କୁ ଧରିପାରେ । କିନ୍ତୁ ଅଳ୍ପ ବୟସର ବ୍ୟକ୍ତିଙ୍କୁ ବିଶେଷ ଭାବରେ ଆକ୍ରମଣ କରିଥାଏ । ଉଗ୍ର ସନ୍ନ୍ୟାସ ରୋଗରେ ରୋଗ ଆକ୍ରମଣର ସ୍ପଷ୍ଟ ପୂର୍ବାଭାସ ଜଣା ପଡ଼ିଯାଇଥାଏ । ରୋଗୀ ହଠାତ୍ ଚିତ୍କାର କରି ଉଠେ ଏବଂ ତଳେ ପଡ଼ିଯାଏ । ରୋଗୀ ଏପରି ପଡ଼ିଯାଏ, ଯଦ୍ୱାରା ତୀବ୍ର ଆଘାତ ପାଇଥାଏ । ରୋଗୀର ମାଂସପେଶୀଯାକ ଶକ୍ତ ଓ ଟାଣ ହୋଇଯାଏ । ମୁହଁ ପ୍ରଥମେ ଶେତା-ପଡ଼ିଯାଏ, ପରେ ଶ୍ୱାସପ୍ରଶ୍ୱାସର ବାଧା ଜନ୍ମି ମୁହଁ କଳା ପଡ଼ିଯାଏ । ଏହାର କେତେ ମିନିଟ ପରେ ମାଂସପେଶୀଗୁଡ଼ିକ ତୀବ୍ର ବେଗରେ ଥରିଉଠେ, ଆଖି ଡୋଳା ଏଣେ ତେଣେ ଘୂରେ; ପାଟିବନ୍ଦ ହୋଇ ଆସେ, ପୁଣି ଖୋଲିଯାଏ । ଏହିପରି ଅବସ୍ଥାରେ ରୋଗୀ ନିଜ ଜିଭକୁ କାମୁଡ଼ି ପକାଇବାର ସମ୍ଭାବନା ଥାଏ । ରୋଗୀ ହଠାତ୍ ମଳମୂତ୍ର ତ୍ୟାଗ କରିଥାଏ । ଧୀରେ ଧୀରେ ରୋଗୀକୁ ତନ୍ଦ୍ରା ଆସେ । ସେହି ତନ୍ଦ୍ରାରୁ ତାକୁ ନିଦ ଆସିଯାଏ ଏବଂ ତା ସଙ୍ଗେ ସଙ୍ଗେ ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇଆସେ । ନିଦ୍ରିତ ଅବସ୍ଥାରୁ ଯେତେବେଳେ ଚେତାପାଏ, ସେ ଇତସ୍ତତଃ ହୋଇପଡ଼େ ।

ଏ ଜାତୀୟ ରୋଗୀର ଚିକିତ୍ସାପାଇଁ ରୋଗୀ ତଥା ରୋଗୀର ଆତ୍ମୀୟ-ସ୍ୱଜନଙ୍କର ସହଯୋଗ ଏକାନ୍ତ ଆବଶ୍ୟକ । ଆତ୍ମୀୟ ସ୍ୱଜନଙ୍କ ସହଯୋଗ ମିଳିଲେ, ସ୍ଥାନ ପରିବର୍ତ୍ତନ, ଆଶା ଆକାଂକ୍ଷା ଜାଗରୂକ କରିବା ଓ ରୋଗୀର ଆମୋଦପ୍ରମୋଦ ବ୍ୟବସ୍ଥା କରାଇବା ସମ୍ଭବପର ହୁଏ ।

ଏ ଜାତୀୟ ରୋଗୀଙ୍କୁ ରୋଗଶାମକ ଓ ନିଦ୍ରାକାରକ ପ୍ରୟୋଗ କରିବା ବିଧେୟ । ଶାମକକ୍ରିୟାପାଇଁ ଦିନକୁ ଦୁଇ ତିନିଥର ଭାଇଟାଲ ଏସେନ୍ସ ଦେବା

ଆବଶ୍ୟକ ଏବଂ ଖାଇବା ପୂର୍ବରୁ ଅଗରଗ୍ଲୋ ଦେବା ବିଧେୟ । ଏହି ଚିକିତ୍ସା ବ୍ୟବସ୍ଥା ଅନ୍ତତଃ ଦୁଇ ତିନି ବର୍ଷ ପର୍ଯ୍ୟନ୍ତ ଚାଲୁ ରଖିବାକୁ ହେବ । ତିନିବର୍ଷ ପରେ କ୍ରମଶଃ ଔଷଧ ମାତ୍ରା କମାଇ ଶେଷରେ ବନ୍ଦ କରିଦେବା ଦରକାର । ସାଧାରଣ ପୁଷ୍ଟିବିଧାନ ପାଇଁ ଆଇବୋଗାଇ ମଧ୍ୟ ବ୍ୟବହାର କରାଯାଇପାରେ ।

ସନ୍ନ୍ୟାସ ରୋଗ ସହିତ ରକ୍ତଚାପାଧିକ୍ୟ, ହୃତଶୂଳ ( Angina ) ବା ସନ୍ନ୍ୟାସ ପୂର୍ବ ଲକ୍ଷଣ (Aura) ଥିଲେ ସେ କ୍ଷେତ୍ରରେ ଆମିଗ୍ଲିଆ ପ୍ରୟୋଗ କରିବା ଆବଶ୍ୟକ ।

ଏହି ରୋଗୀମାନଙ୍କୁ ବିପଜ୍ଜନକ ସ୍ଥାନ ଯଥା ନିଆଁ, ପାଣି, ଗଡ଼ିଆ, କୂଅଠାରୁ ଦୂରରେ ରଖିବା ଆବଶ୍ୟକ । ସନ୍ନ୍ୟାସ ଆକ୍ରମଣର ପୂର୍ବାଭାସ ବା ମୂର୍ଚ୍ଛା ଦେଖାଗଲେ, ଆମିଗ୍ଲିଯା ହଠାତ୍ ପ୍ରୟୋଗକଲେ ସନ୍ନ୍ୟାସ ଆକ୍ରମଣକୁ ପ୍ରତିହତ କରି ହୁଏ । ରୋଗ ଆକ୍ରମଣ ସମୟରେ ରୋଗୀ ଯେପରି ଆଘାତ ନ ପାଏ, ସେଥିପ୍ରତି ଯତ୍ନନେବାକୁ ହେବ । ପାଟିରେ କାଠ, କର୍କ ବା ରବରଠିପି ଲଗାଇ ଦେଲେ ଜିଭ-କାମୁଡ଼ାରୁ ଅନ୍ତତଃ ରକ୍ଷା ମିଳେ ।

ରକ୍ତଚିତ୍ରର ପରିବର୍ତ୍ତନ—

ଏହା ବହୁ କାରଣରୁ ହୋଇପାରେ । ପ୍ରଥମତଃ ପୁଷ୍ଟିହୀନତା କାରଣରୁ ରକ୍ତଚିତ୍ରର ପରିବର୍ତ୍ତନ ଘଟିଥାଏ । ଦ୍ୱିତୀୟତଃ କୃମି ପ୍ରାଦୁର୍ଭାବ ଅନ୍ୟତମ କାରଣ, ତୃତୀୟତଃ କୌଣସି କାରଣରୁ ଅତ୍ୟଧିକ ରକ୍ତସ୍ରାବ, ଚତୁର୍ଥତଃ ଆଭ୍ୟନ୍ତରୀଣ ଅର୍ବୁଦ ହେତୁ ରକ୍ତ ଚିତ୍ରର ପରିବର୍ତ୍ତନ ଘଟିଥାଏ । ଏଣୁ ରକ୍ତହୀନତାର ଲକ୍ଷଣ ଦେଖାଗଲେ ତାର ମୂଳ କାରଣ ନିର୍ଦ୍ଧାରଣ କରି ଚିକିତ୍ସା କାର୍ଯ୍ୟରେ ଅଗ୍ରସର ହେବା ଆବଶ୍ୟକ ।

ପୀଡ଼ା, ବେଦନା –

ରୋଗବିଶେଷର ମୁଖ୍ୟ ପରିପ୍ରକାଶ ଘଟେ, ରୋଗବିଶେଷର ପୀଡ଼ା ବେଦନା ମାଧ୍ୟମରେ । ଏହାହିଁ ରୋଗୀକୁ ଚିକିତ୍ସାର ଶରଣାପନ୍ନ କରିଥାଏ । ଚିକିତ୍ସକର ସଫଳତା ପୀଡ଼ାର ମୂଳ କାରଣ ଉଦ୍‌ଘାଟନ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । ସମୟ ସମୟରେ ଏହି ବେଦନାର ଆଶୁ ନିରାକରଣ କରିବାକୁ ଯାଇ ରୋଗ ନିର୍ଣ୍ଣୟକୁ ବିପର୍ଯ୍ୟସ୍ତ କରାଯାଇଥାଏ । କାରଣ ହଠାତ୍ ରୋଗର ମୂଳ କାରଣ ନ ଜାଣି ବେଦନାହରଣ ପାଇଁ ଔଷଧ ବ୍ୟବସ୍ଥା କଲେ ରୋଗର ଲକ୍ଷଣ ଚପିଯାଏ ଏବଂ ମୂଳ ରୋଗଟି ନିର୍ଣ୍ଣୟ କରିବା କଠିନ ହୋଇପଡ଼େ ।

ସମସ୍ତ ପ୍ରକାର ବେଦନାକୁ ତିନି ଭାଗରେ ବିଭକ୍ତ କରାଯାଇପାରେ ଯଥା— ଉଗ୍ର, ମଧ୍ୟମ ଓ ଲଘୁ । ଏହା ସମୟ ସମୟରେ କୌଣସି ସଂକ୍ରମଣ ହେତୁ ଦେଖା-ଯାଇପାରେ ଯଥା—ଉଣ୍ଡୁକପୁଚ୍ଛ ପ୍ରଦାହ (ଆପେଣ୍ଡିସାଇଟିସ୍), ସନ୍ଧି ପ୍ରଦାହ ଇତ୍ୟାଦି । ଏଣୁ ପ୍ରତି ବେଦନା ସ୍ଥଳରେ ବେଦନାର ମୂଳ କାରଣ କଅଣ ତାହା ସ୍ଥିର କରିବାକୁ

ହେବ । ଏହାଦ୍ୱାରା ଚିକିତ୍ସା କାର୍ଯ୍ୟ ସୁଗମ ହୁଏ । ଉଣ୍ଡୁକପୁଚ୍ଛ ପ୍ରଦାହ ରୋଗରେ ଆଶୁ ଶଲ୍ୟକ୍ରିୟା ବା ପ୍ରତିଜୀବୀ ଔଷଧ (ଆଣ୍ଟିବାଇଓଟିକ୍) ପ୍ରୟୋଗ ଅଧିକ ଫଳପ୍ରଦ ବ୍ୟବସ୍ଥା ।

ସନ୍ଧି ପ୍ରଦାହ -

ଦେଖାଗଲା ଆଣ୍ଠୁ ଗଣ୍ଠି ଫୁଲିଛି ହାତକୁ ଗରମଲାଗୁଚି, ଗଣ୍ଠିଗୁଡ଼ିକ ଫୁଲିଯାଇଛି, ଅଙ୍ଗପ୍ରତ୍ୟଙ୍ଗ ଚଳାଇବା ପାଇଁ କଷ୍ଟ ହେଉଛି । ଏ ସ୍ଥଳରେ କୌଣସି ପୂୟମୟତା (ସେପ୍‌ଟିକ୍ କଣ୍ଡିସନ) ଅଛି କି ନାହିଁ, ତାହା ଦେଖିବାର କଥା, ବିଶେଷତଃ ଦୂଷିତ ତୁଣ୍ଡିକେର (ସେପ୍‌ଟିକ୍ ଟନ୍‌ସିଲାଇଟିସ) ନାଳୀଘା । ଏପରି ସ୍ଥଳେ କାଳ ବିଳମ୍ବ ନ କରି ରାସାୟନିକ ଔଷଧ ପ୍ରୟୋଗ କରିବା ବିଧେୟ । ପ୍ରତି ଚବିଶଘଣ୍ଟା ଅନ୍ତରରେ ଥରେ ଲେଖାଏ ରିମୋରିନ୍ ଇଞ୍ଜେକ୍‌ସନ ବ୍ୟବହାର କରାଇଲେ ବିଶେଷ ସୁଫଳ ମିଳିଥାଏ । ବେଦନା ଉପଶମ ହେବା ପର ସମ୍ପୂର୍ଣ୍ଣ ଆରୋଗ୍ୟଲାଭ ପର୍ଯ୍ୟନ୍ତ ଡେସିଲ ପ୍ରୟୋଗ କରିବା ଆବଶ୍ୟକ ।

ଯେଉଁ ସ୍ଥାନରେ ଫୁଲ ଥିବ—ସେ ସ୍ଥାନକୁ ତୁଳା ବା ଉଲଦେଇ ବାନ୍ଧିରଖିବାକୁ ହେବ । ସ୍ଥଳବିଶେଷରେ Splint ମଧ୍ୟ ଦିଆଯାଇପାରେ । ରୋଗର ପ୍ରାରମ୍ଭ ଅବସ୍ଥାରେ ଡେସଲ ବା ବ୍ରୁବ୍‌ଲେନ ମାଲିସ କରିବାଦ୍ୱାରା ବିଶେଷ ସୁଫଳ ମିଳିଥାଏ । ଫୁଲ କମିଗଲେ ଧୀରେ ଧୀରେ ଅଙ୍ଗ ଚାଳନା କରିବାକୁ ହେବ । ଏ ଜାତୀୟ ରୋଗୀଙ୍କର କ୍ଷୁଧା ଓ କୋଷଶୁଦ୍ଧି ପ୍ରତି ଯଥାର୍ଥ ଧ୍ୟାନ ରଖିବା ଆବଶ୍ୟକ ।

ଜ୍ୱର ଥିଲେ ରୋଗୀକୁ ତରଳ ଖାଦ୍ୟ ବିଶେଷତଃ ଦୁଧ, ଫଳରସ ପ୍ରଭୃତି ଦେବା ଆବଶ୍ୟକ ।

ସମୟ ସମୟରେ ଯନ୍ତ୍ରଣା ସମ୍ପୂର୍ଣ୍ଣ ମାନସିକ । ସେ ସ୍ଥଳରେ ରୋଗନାଶକ ଔଷଧ ସଙ୍ଗେ ଭାଇଟାଲ ଏସେନ୍‌ସ ପ୍ରୟୋଗ କଲେ ରୋଗୀ ନିଜକୁ ଯନ୍ତ୍ରଣାମୁକ୍ତ ବୋଲି ମନେ କରିଥାଏ ।

ଅନ୍ୟାନ୍ୟ ପୀଡ଼ାଦାୟକ ଅବସ୍ଥା—

ଶିରଃଶୂଳ, ଦନ୍ତଶୂଳ, କର୍ଣ୍ଣଶୂଳ, ଉଦରଶୂଳ, ଦୁଷ୍ଟ ପ୍ରତିଶ୍ୟାୟ (ସାଇନୋସାଇଟିସ) ପ୍ରଭୃତି ରୋଗ ପାଇଁ ଅପରେସନ ପର ପୀଡ଼ାସ୍ଥଳରେ ଡେସିଲ ସୁନିର୍ବାଚିତ ଔଷଧ । ଅନ୍ୟ ଯେ କୌଣସି କାରଣରୁ ଦେହ ହାତ ଘୋଳାବିନ୍ଧା ହେଉଥିଲେ ଏହା ମଧ୍ୟ ପ୍ରୟୋଗ କରାଯାଇପାରେ ।

ପେଟ ଗୋଳମାଳ ବା ଅନ୍ୟାନ୍ୟ ଆଶୟିକ ବିକୃତି ସ୍ଥଳରେ ଏହା ପ୍ରଯୁଜ୍ୟ ନୁହେଁ ।

ମୁଣ୍ଡବ୍ୟଥା—

ଏହି ରୋଗ ବିଭିନ୍ନ ରୋଗର ଉପସର୍ଗ ଭାବରେ ଦେଖାଦେଇଥାଏ । ବିଶେଷତଃ ଜ୍ୱର ଓ ସର୍ଦ୍ଦିରୋଗର ପ୍ରାରମ୍ଭ ଅବସ୍ଥାରେ ମୁଣ୍ଡବ୍ୟଥା ହୋଇଥାଏ । ମଣ୍ଡବ୍ୟଥାର ଅନ୍ୟାନ୍ୟ କାରଣମାନଙ୍କ ମଧ୍ୟରେ ରକ୍ତହୀନତା, କୋଷ୍ଠକାଠିନ୍ୟ, ଚକ୍ଷୁପୀଡ଼ା ମାନସିକ ଉଦ୍‌ବିଗ୍ନତା, ରକ୍ତଚାପ ଆଧିକ୍ୟ, ପୁରାତନ ବୃକ୍କ୍ ରୋଗ, କର୍ଣ୍ଣ, ନାଶା, ଗଳା, ଦନ୍ତ ରୋଗ ପ୍ରଭୃତି ।

ମୁଣ୍ଡବ୍ୟଥା ଚିକିତ୍ସାର ମୂଳସୂତ୍ର ହେଉଛି, ପ୍ରଥମେ ରୋଗର କାରଣ ନିର୍ଣ୍ଣୟ କରିବା ଓ ତଦନୁଯାୟୀ ଚିକିତ୍ସା ବିଧାନ କରିବା । କ୍ଷଣିକ ଚିକିତ୍ସା ଦୃଷ୍ଟିରୁ ଫେନୋ-ବାର୍ବିଟୋନ୍ ଓ ଡେଁସିଲ ହେଉଛି ମୁଖ୍ୟ ଔଷଧ । ଯଦି ତୀବ୍ର ଜ୍ୱର ଥାଏ, ତାହାହେଲେ ହରମୋପାଇରିନ୍ ପ୍ରଥମେ ପ୍ରୟୋଗ କରିବା ଆବଶ୍ୟକ । ଏହା ସହିତ କପାଳରେ ଲୁବ୍‌ଜୋନ ମାଲିସ କରିବା ଦ୍ୱାରା ମୁଣ୍ଡବ୍ୟଥାର ଉପଶମ ହୋଇଥାଏ । ଶୋଇବା ପୂର୍ବରୁ ରାଇଟାଲ ଏସେନ୍‌ସ ପ୍ରୟୋଗ କଲେ ସୁନିଦ୍ରା ହୁଏ । ରୋଗର ଉଗ୍ର ଅବସ୍ଥାରେ ନର୍‌ଭୋପ୍ଲେକ୍‌ସ ଇଞ୍ଜେକ୍‌ସନ ଦିଆଯାଇପାରେ । ନରଭୋପ୍ଲେକ୍‌ସ ବଟିକା ଏହି ଅବସ୍ଥାରେ ଖାଇବାକୁ ଦେଲେ ବିଶେଷ ଫଳମିଳେ ।

ପାକସ୍ଥଳୀ ଓ ଅନ୍ତ—

ଖାଦ୍ୟପଦାର୍ଥ ତରଳ ଥିଲେ, ତାହା କ୍ଷୁଦ୍ରାନ୍ତରେ ଶୋଷିତ ହୋଇଥାଏ । ସାଧାରଣତଃ ଅନେକ ଔଷଧ ମଧ୍ୟ ଏହି କ୍ଷୁଦ୍ରାନ୍ତରେ ଶୋଷିତ ହୋଇଥାଏ । ଏହା ସହିତ ଜଳ ଥିଲେ ଏହି ଶୋଷଣ କ୍ରିୟା ଶୀଘ୍ରତର ହୋଇଥାଏ । ଏଣୁ କ୍ଷୁଦ୍ରାନ୍ତର କାର୍ଯ୍ୟ ପାଇଁ ଆବଶ୍ୟକ ପରିମାଣରେ ପାଣି ପିଇବା ଆବଶ୍ୟକ ।

ଯଥାର୍ଥ କ୍ଷୁଧା ହେବା ସୁସ୍ୱାସ୍ଥ୍ୟର ଲକ୍ଷଣ । ମଧୁମେହ ରୋଗରେ ବିଶେଷ କ୍ଷୁଧା ହୁଏ । ତାହା ସୁସ୍ୱାସ୍ଥ୍ୟର ଲକ୍ଷଣ ନୁହେଁ ବରଂ ସେହି କ୍ଷୁଧାକୁ ଅଳୀକ କ୍ଷୁଧା କହିବା ଯୁକ୍ତିସଙ୍ଗତ ହେବ । ଏହି ରୋଗରେ ଯେତେ ଖାଇଲେ ମଧ୍ୟ ତାହା ଦେହରେ ଲଗେ ନାହିଁ । ଏହି ରୋଗରେ ସାତ୍ମୀକରଣକ୍ରିୟା ଠିକ୍ ହୁଏ ନାହିଁ ବୋଲି ଯେତେ ଖାଇଲେ ମଧ୍ୟ ଦେହରେ ଶକ୍ତିସାମର୍ଥ୍ୟ ଜନ୍ମେ ନାହିଁ । ଅପର ପକ୍ଷରେ ଯକୃତ୍ ବିକାର, କୃମି ଦୋଷ ଓ ଆନ୍ତ୍ରିକ ରୋଗ ଥିଲେ କ୍ଷୁଧା ଓ ପରିପାକ ଶକ୍ତି କମିକମି ଯାଏ ।

ସାଧାରଣ କ୍ଷୁଧାଠାରୁ ଜୀର୍ଣ୍ଣନ କ୍ରିୟା ସ୍ୱତନ୍ତ୍ର । ସମ୍ପୂର୍ଣ୍ଣ ଜୀର୍ଣ୍ଣନ ଦ୍ୱାରା ଖାଦ୍ୟରୁ ଶ୍ୱେତସାର, ଚର୍ବି, ଛେନାଜାତୀୟ ଖାଦ୍ୟ, ବିବିଧ ଧାତବ ପଦାର୍ଥ ଓ ଭିଟାମିନ୍ ସଂଗୃହୀତ ହୋଇ ଦେହରେ ଶକ୍ତି ସଂଗ୍ରହ କରେ । ସାଧାରଣ କ୍ଷୁଧାକୁ ଜୀର୍ଣ୍ଣନ କ୍ରିୟା ଜାଗରିତ କରିଥାଏ । ଆମାଶୟ ଓ ଆନ୍ତ୍ରିକ ଯାବତୀୟ ରୋଗ ସଙ୍ଗରେ ଅଗ୍ନିମାନ୍ଦ୍ୟ ଓ ଯାବତୀୟ ପଚନବିକାର ସମ୍ପୃକ୍ତ ।

ଏକଥା ପ୍ରତ୍ୟେକେ ମନେରଖିବା ଆବଶ୍ୟକ, ଖାଦ୍ୟପଦାର୍ଥକୁ ଉତ୍ତମରୂପେ ନ ଚୋବାଇ କେବଳ ଗିଳିଦେଲେ ତଦ୍ୱାରା ପଚନକ୍ରିୟା ଠିକ୍ ହୁଏ ନାହିଁ । ଖାଇବା ସମୟରେ ଚିନ୍ତା ଓ ଶୋକ କରିବା, ରାତିରେ ସୁନିଦ୍ରା ନ ହେଲେ ମଧ୍ୟ ତଦ୍ୱାରା ପରିପାକ କ୍ରିୟା ପ୍ରଭାବିତ ହୋଇଥାଏ । ଯଥା ସମୟରେ ଖାଇବା ଏବଂ ପ୍ରତିଦିନ ନିୟମିତ ବ୍ୟାୟାମ କରିବାଦ୍ୱାରା ଯଥାର୍ଥ ଜାର୍ଣ୍ଣନ କ୍ରିୟା ଓ ସାତ୍ମୀକରଣ କ୍ରିୟା ଉତ୍ତମରୂପେ ସମ୍ପାଦିତ ହୋଇଥାଏ । ଖାଦ୍ୟପଦାର୍ଥ ଖିଆଯିବା ପରଠାରୁ ଦନ୍ତ, ପାକସ୍ଥଳୀ, ଅନ୍ତ୍ରମଣ୍ଡଳୀ ଦେଇ ଗତିକରେ । ଜାର୍ଣ୍ଣନ ପ୍ରକ୍ରିୟାଦ୍ୱାରା ଖାଦ୍ୟପଦାର୍ଥ ପରିପକ୍ୱ ହୋଇ ଖାଦ୍ୟରସ ରକ୍ତରେ ପରିଣତ ହେବା ଉପଯୋଗୀ ହୋଇଯାଏ । ଖାଦ୍ୟପଦାର୍ଥଗୁଡ଼ିକ ପ୍ରଥମେ ଦାନ୍ତଦ୍ୱାରା ଛେଦିତ ହୁଏ । ପରେ ପାଟିର ଲାଳ ସଙ୍ଗେ ମିଶି ତାହା ସାତ୍ମୀକରଣ ଉପଯୋଗୀ ହୋଇଯାଏ । ପାଟିର ଲାଳଦ୍ୱାରା ଖାଦ୍ୟର ଶ୍ୱେତସାର ଅଂଶ କିୟଦଂଶରେ ଜାର୍ଣ୍ଣ ହୋଇଥାଏ । ଆମାଶୟରେ ଖାଦ୍ୟ ପହଞ୍ଚିଲେ ସେଠାରେ ଜଠରରସ ଦ୍ୱାରା ଖାଦ୍ୟର ଛେନାଜାତୀୟ ଖାଦ୍ୟାଂଶ ସାତ୍ମୀକରଣ ଉପଯୋଗୀ ହୋଇଯାଏ । ଆମାଶୟରେ ଜାର୍ଣ୍ଣ କ୍ରିୟା ଚାଲିଥିଲାବେଳେ ଖାଦ୍ୟରସ ପାକସ୍ଥଳୀର ଅମ୍ଳରସଦ୍ୱାରା ଆପ୍ଲୁତ ହୋଇଯିବା ଫଳରେ ଖାଦ୍ୟପଦାର୍ଥକୁ ତଳକୁ ପଠାଇବାପାଇଁ ଆମାଶୟର କେତେକାଂଶରେ ଶିଥିଳତା ଦେଖାଯାଏ । ଏଣୁ ଖାଦ୍ୟପଦାର୍ଥ ଆମାଶୟରୁ କ୍ଷୁଦ୍ରାନ୍ତକୁ ଯିବାକୁ ସୁଯୋଗ ପାଏ । କ୍ଷୁଦ୍ରାନ୍ତରେ ଖାଦ୍ୟ, ପିତ୍ତ ଓ ଅଗ୍ନ୍ୟାଶୟ ରସ ଓ ଆନ୍ତ୍ରିକ ପାଚକରସଦ୍ୱାରା ଜାର୍ଣ୍ଣ ହୋଇଯାଏ । ଏହି ଅବସ୍ଥାରେ କ୍ଷୁଦ୍ରାନ୍ତ ଦୋଷଦ୍ୱାରା ଖାଦ୍ୟସାର ଶୋଷିତ ହୋଇ ଯକୃତ୍‌କୁ ଚାଲିଯାଏ । ସେଠାରେ ଏହା ସାତ୍ମୀକୃତ ହେବା ପୂର୍ବରୁ ଚୟାପଚୟ ପ୍ରକ୍ରିୟାଦ୍ୱାରା ସାତ୍ମୀକୃତ ଅବସ୍ଥା ଚାଲିଆସିଥାଏ ।

ଯେଉଁଠାରେ ଗ୍ୟାସ ଓ କୋଷ୍ଠବଦ୍ଧତା ଯୋଗୁଁ ଅଗ୍ନିମାନ୍ଦ୍ୟ ଘଟେ—ଫଳରେ ସାତ୍ମୀକରଣ କ୍ରିୟା ବାଧାପ୍ରାପ୍ତ ହୁଏ, ସେଠାରେ ହାଇଡ୍ରାଷ୍ଟିସ୍ ପ୍ରୟୋଗ କଲେ କୋଷ୍ଠକାଠିନ୍ୟ ଓ ଗ୍ୟାସ ଦୂର ହୋଇ କ୍ଷୁଧା ବୃଦ୍ଧିପ୍ରାପ୍ତ ହୋଇଥାଏ ।

## ଅଗ୍ନିମାନ୍ଦ୍ୟ—

ଏହି ରୋଗରେ ଭୋଜନର ଅଧଘଣ୍ଟା ପୂର୍ବରୁ ଗାଷ୍ଟ୍ରୋମୋନ ପ୍ରୟୋଗ କଲେ କ୍ଷୁଧାଶକ୍ତି ବଢ଼େ । ଗାଷ୍ଟ୍ରୋମୋନ ଖାଇବା ପରେ କିଛି ପାଣି ପିଇବାକୁ ହୁଏ । ଯଦି ରୋଗୀର ଖାଦ୍ୟ ଉତ୍ତମରୂପେ ହଜମ ହେଉ ନ ଥାଏ ଓ କୋଷ୍ଠକାଠିନ୍ୟ ରହୁଥାଏ, ତାହାହେଲେ ସଲଫର ଓ ସୋଲକ୍ସ ପ୍ରୟୋଗ କଲେ କୋଷ୍ଠଶୁଦ୍ଧି ହୁଏ ଓ ଖାଦ୍ୟ ପଦାର୍ଥ ଉତ୍ତମରୂପେ ହଜମ ହୋଇଯାଏ । ଏଣୁ ତଦ୍ୱାରା ସାତ୍ମୀକରଣ କ୍ରିୟା ଉତ୍ତମ-ରୂପେ ଚାଲି ଶରୀରକୁ ଖାଦ୍ୟର ପୌଷ୍ଟିକ ଗୁଣ ଯୋଗାଇଥାଏ ।

ରୋଗୀ କ୍ଷୀଣ ଶରୀର ଓ ଦୁର୍ବଳ ହୋଇଥିଲେ ଏଥି ସଙ୍ଗେ ଆଲଫାଲଫା ପ୍ରୟୋଗ କଲେ ରୋଗୀର ଦୁର୍ବଳତା ଦୂର ହୋଇଥାଏ । ଯଦି ରୋଗୀ କେବଳ

ବସିରହିବା କାମ କରୁଥାଏ, ତାହାହେଲେ ଭୋଜନ ପୂର୍ବରୁ କିଛି ସମୟ ବୁଲଚାଲ କରି ଆସି ଖାଦ୍ୟ ଗ୍ରହଣ କଲେ ଚିକିତ୍ସା କାର୍ଯ୍ୟ ସୁଗମ ହୋଇଥାଏ ।

ପେଟଫାମ୍ପ ବା—

ଅତ୍ୟଧିକ ପରିମାଣରେ ଖାଦ୍ୟଦ୍ରବ୍ୟ ଖାଇବା, କୋଷ୍ଠଶୁଦ୍ଧି ନ ହେବା ଓ ଅଜୀର୍ଣ୍ଣ ହେତୁ ପେଟ ଫାମ୍ପିଥାଏ । ଏଣୁ ଏଠାରେ-ପ୍ରଥମ ଚିକିତ୍ସା ହେଉଛି, ରୋଗର କାରଣଗୁଡ଼ିକୁ ଦୂର କରିବା । ଏପରି ସ୍ଥଳେ ଔଷଧ ବ୍ୟବସ୍ଥା କରିବାକୁ ହେଲେ ଖାଦ୍ୟ ଗ୍ରହଣର ଅଧଘଣ୍ଟା ପୂର୍ବରୁ ସଲଫୋସ ଓ ଭୋଜନ ପରେ ଗୋଟିଏ ଗାଷ୍ଟ୍ରୋ-ମୋନ ବଟିକା ବ୍ୟବହାର କରିବାକୁ ପଡ଼ିବ । ଏହି ଅବସ୍ଥାରେ ଖାଇବା ମଝିରେ ପାଣି ପିଇବା ଅନୁଚିତ ।

ଅଂନ୍ତ୍ରକ୍ଷତ (ପେପ୍‌ଟିକ୍ ଅଲ୍‌ସର)—

ଅନ୍ତ୍ରକ୍ଷତ କହିବାଦ୍ୱାରା ଅଧିଜଠରକ୍ଷତ, ଓ ଗ୍ରହଣୀକ୍ଷତକୁ ବୁଝାଇଥାଏ । ଏହି ସ୍ଥାନମାନଙ୍କରେ କ୍ଷତ ହୋଇଥିଲେ, ଅଧିଜଠର ଓ ଗ୍ରହଣୀଥିବା ସ୍ଥାନରେ ସାମୟିକ ଶୂଳ ବେଦନା ହୁଏ । ଜଠରକ୍ଷତ ରୋଗୀର ଖାଇବା ପରେ ପରେ ଶୂଳ ବେଦନା ହୁଏ । ଏହାର କାରଣ ସେଠାରେ ଖାଦ୍ୟପଦାର୍ଥ ସଞ୍ଚିତ ହେବାଦ୍ୱାରା ସ୍ଥାନିକ ଉତ୍ତେଜନା ସୃଷ୍ଟି ହେଉଛି ଏବଂ ତଦ୍‌ଜନ୍ୟ ଶୂଳ ବେଦନା ହେଉଅଛି ।

ଗ୍ରହଣୀକ୍ଷତ ରୋଗରେ ଖାଇବାର ଅଧଘଣ୍ଟା ପରେ ଶୂଳ ବେଦନା ହୁଏ । ଏହାର କାରଣ ସେତେବେଳେ ଖାଦ୍ୟପଦାର୍ଥ ଗ୍ରହଣୀରେ ପହଞ୍ଚି ଯାଇଥାଏ । ଉଭୟ ସ୍ଥଳରେ ଅତ୍ୟଧିକ ଅମ୍ଳରସ ସଞ୍ଚିତ ହୁଏ । ଏହି ଅମ୍ଳରସର ଆଧିକ୍ୟ ହେତୁ ଶୂଳ ବେଦନା ହୁଏ । ଏଣୁ ଏହି ଅବସ୍ଥାରେ ଅମ୍ଳନାଶକ ଓ ଅଙ୍ଗଦହନାଶକ ଔଷଧ ପ୍ରୟୋଗ କରିବା ଆବଶ୍ୟକ । ମ୍ୟାଗ୍‌ନିନ୍ ଏପରି ସ୍ଥଳରେ ଗୋଟିଏ ସୁନିର୍ବାଚିତ ଔଷଧ । ଏହାକୁ ପ୍ରତି ଗୁରିଘଣ୍ଟା ଅନ୍ତରରେ ବ୍ୟବହାର କରାଇଲେ ସୁଫଳ ମିଳିଥାଏ । ଗ୍ୟାଷ୍ଟ୍ରୋମୋନ ବ୍ୟବହାର କରିବାକୁ ହେଲେ ଖାଇବାର ଅଧଘଣ୍ଟା ପୂର୍ବରୁ ବା ଖାଇବାର ଦୁଇଘଣ୍ଟା ପରେ ପ୍ରୟୋଗ କରିବା ଆବଶ୍ୟକ । ଏ ଜାତୀୟ ରୋଗର ରୋଗୀମାନଙ୍କ ପକ୍ଷରେ ମଦ୍ୟପାନ ଓ ଧୂମପାନ ଏକାନ୍ତ କ୍ଷତିକାରକ ।

ଏହି ରୋଗୀର ଖାଦ୍ୟପଦାର୍ଥରେ ଅତ୍ୟଧିକ ମସଲା ଓ ତେଲ ପକାଇବା ଅନୁଚିତ । ରୋଗୀର ଖାଦ୍ୟ ଯଥାସମ୍ଭବ ସାଦାସିଧା ଓ ଲଘୁପାକ ହେବା ଆବଶ୍ୟକ । ଉକ୍ତ ରୋଗର ରୋଗୀମାନଙ୍କ ପକ୍ଷରେ ଖାଇବାର ଅଧଘଣ୍ଟା ପୂର୍ବରୁ ଦୁଧ ଓ ଖାଇବାର ଘଣ୍ଟାକ ପରେ ପ୍ରଚୁର ପାଣି ପିଇବା ଆବଶ୍ୟକ । ଏ ଜାତୀୟ ରୋଗୀଙ୍କର ଔଷଧ ବ୍ୟବସ୍ଥା ଅନ୍ତତଃ ଛଅମାସ ପର୍ଯ୍ୟନ୍ତ ଚାଲିବା ଆବଶ୍ୟକ । ରୋଗର ଉଗ୍ର ଅବସ୍ଥାରେ ଅତ୍ୟଧିକ ଶୂଳ ବେଦନା ହୋଇଥାଏ । ଏପରିସ୍ଥଳେ ଔଷଧ ବ୍ୟବହାର ଦ୍ୱାରା ସୁଫଳ ନ ମିଳିଲେ ଶଲ୍ୟ ଚିକିତ୍ସାର ସାହାଯ୍ୟ ନେବା ଆବଶ୍ୟକ ।

ଜଠର ପ୍ରଦାହ (ଗ୍ୟାଷ୍ଟ୍ରାଇଟିସ୍)–

ସାଧାରଣତଃ ବିରୁଦ୍ଧ ଖାଦ୍ୟ ଗ୍ରହଣ ହେତୁ ଏହି ରୋଗ ହୋଇଥାଏ । ଏହି ଅବସ୍ଥାରେ ରୋଗୀଠାରେ ବାନ୍ତି ଓ ଶୂଳବେଦନା ଦେଖାଦେଇଥାଏ । ସମୟ ସମୟରେ ଅତ୍ୟଧିକ ବାନ୍ତି ହେତୁ ରୋଗୀର ନିର୍ବଳତା ଜନ୍ମିଥାଏ । ଏହି ଦୋଷ ଜଠର ସ୍ଥାନରୁ ଅନ୍ତ ପର୍ଯ୍ୟନ୍ତ ବ୍ୟାପି ରହିଲେ 'ଜଠରାନ୍ତ ପ୍ରଦାହ' କୁହାଯାଏ ।

ଏହି ଅବସ୍ଥାରେ ରୋଗୀର ପ୍ରଚୁର ତରଳ ଝାଡ଼ା ହୋଇ ରୋଗୀ ସାନ୍ନିପାତିକ ଅବସ୍ଥାର ସମ୍ମୁଖୀନ ହୁଏ । ଏ ଅବସ୍ଥାରେ ରୋଗୀକୁ ଖୁବ୍ ସାବଧାନତା ସହ ଚିକିତ୍ସା କରିବା ଆବଶ୍ୟକ । ଏହି ଅବସ୍ଥାରେ ପାଟିରେ ବରଫ ଜାକିଲେ ବାନ୍ତି ଅନେକ ପରିମାଣରେ କମିଯାଏ । ତରଳଝାଡ଼ା ସହିତ ପେଟରେ ଯନ୍ତ୍ରଣା ଥିଲେ ନିମ୍ନମତେ ତାର ଚିକିତ୍ସା ବିଧାନ କରିବାକୁ ହେବ ।

ଏହି ଅବସ୍ଥା ପୂରା ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ରୋଗୀକୁ କୌଣସି ଖାଦ୍ୟ-ପଦାର୍ଥ ଦେବା ନିଷିଦ୍ଧ । ପାଣି ବା ପଇଡ଼ପାଣି ସହିତ ମ୍ୟାଗ୍ନିନ୍ ଏହି ଅବସ୍ଥାର ନିଶ୍ଚିତ ଔଷଧ । ପ୍ରତି ଘ୍ରିଘଣ୍ଟା ଅନ୍ତରରେ ଡିଆସିନ୍ ପ୍ରୟୋଗ କଲେ ତରଳ ମଳଭେଦ ଦୂର ହୋଇଯାଏ । ଉଗ୍ର ଲକ୍ଷଣଗୁଡ଼ିକର ଉପଶମ ଦେଖାଗଲେ ପତଳା ବାର୍ଲି ବା ଶାଗୁ ସହ ଆଲ୍‌ବୋସାଙ୍ଗ ପ୍ରତି ୩୨୪ ଘଣ୍ଟା ଅନ୍ତରରେ ପ୍ରୟୋଗ କଲେ ରୋଗୀ ଶୀଘ୍ର ପୂର୍ବାବସ୍ଥାକୁ ଫେରିଆସେ ।

ତରଳ ମଳଭେଦ–

ଏହି ଅବସ୍ଥାରେ ଘନ ଘନ ତରଳ ଝାଡ଼ା ହୁଏ । ଏପରି ତରଳ ଝାଡ଼ା ବହୁ କାରଣରୁ ହୋଇପାରେ । ବିଶେଷତଃ ଅଜୀର୍ଣ୍ଣ ଓ ଜୀବାଣୁ ସଂକ୍ରମଣ ହେତୁ ଏହା ହୋଇଥାଏ ।

ଯାହାହେଉ କାରଣ ଅନୁସନ୍ଧାନ କରିବା ସଙ୍ଗେ ସଙ୍ଗେ ତରଳ ମଳଭେଦ ଦୂର କରିବାକୁ ହେବ । ଏଥିପାଇଁ ଡିଆସିନ୍ ଏକ ନିଶ୍ଚିତ ଔଷଧ । ଏହା ଯାବତୀୟ ଆମାତିସାର, ରକ୍ତାତିସାର ରୋଗ ଭଲ କରିଥାଏ ।

ଏମୋବିକ୍ ଅତିସାର–

ଏହି ରୋଗରେ ପେଟରେ ଯନ୍ତ୍ରଣା ହେବା ସଙ୍ଗେ ସଙ୍ଗେ ଘନ ଘନ ଲାଳମିଶ୍ରିତ ତରଳ ଝାଡ଼ା ହୁଏ । ସମୟ ସମୟରେ ପେଟରେ ଶୂଳବେଦନା ହୁଏ । ଲାଳ ଓ ରକ୍ତ ଝାଡ଼ା ହେବା ସମୟରେ ପେଟ କାଟି କାଟି ହୁଏ ।

ଜୀବାଣୁଜନିତ ଅତିସାର–

ଏହି ରୋଗରେ ପୂର୍ବୋକ୍ତ ଲକ୍ଷଣ ସଙ୍ଗେ ବିଶେଷ ତରଳ ମଳଭେଦ ହୁଏ । ଏହି ରୋଗର ଉଗ୍ର ଅବସ୍ଥାରେ ନିର୍ଜ୍ଜଳତା ଦେଖା ଦେଇଥାଏ ।

ସଦ୍ୟ ସଂଗୃହୀତ ମଳକୁ ଅଣୁବୀକ୍ଷଣ ଯନ୍ତ୍ରଦ୍ୱାରା ପରୀକ୍ଷା କଲେ ଅଭ୍ରାନ୍ତ ରୋଗ ନିର୍ଣ୍ଣୟ ହୋଇଥାଏ । ଦଣ୍ଡାଣୁଜନିତ ଅତିସାର ରୋଗରେ ରୋଗୀକୁ ପ୍ରତି ଚାରିଘଣ୍ଟା ଅନ୍ତରରେ ଡିଆସିନ୍ ପ୍ରୟୋଗ କରିବା ଆବଶ୍ୟକ । ରୋଗୀର ଦେହରେ ଥଣ୍ଡା ନ ଲଗାଇ ଉଷମ ରଖିବା ଆବଶ୍ୟକ । ଏହି ଅବସ୍ଥାରେ ସାମାନ୍ୟ ଦୁଧ ସହିତ ଶାଗୁ ବା ବାର୍ଲି ପ୍ରସ୍ତୁତ କରି ପଥ୍ୟ ସ୍ୱରୂପ ଦିଆଯାଇପାରେ । ରୋଗୀକୁ ପ୍ରଚୁର ପାଣି ଓ ମୁକ୍ତବାୟୁ ସେବନ କରିବାକୁ ଦେବା ଆବଶ୍ୟକ । ରୋଗୀର ପରିବେଶ ଯେପରି ସ୍ୱାସ୍ଥ୍ୟସମ୍ମତ ରହେ ସେଥିପ୍ରତି ଧ୍ୟାନଦେବା ଏକାନ୍ତ କର୍ତ୍ତବ୍ୟ । ଖାଦ୍ୟପଦାର୍ଥ ଯେପରି ପଚାସଢ଼ା ନ ହୁଏ ଓ ସେଥିରେ ମାଛି ନ ବସନ୍ତି, ସେଥିପ୍ରତି ଧ୍ୟାନ ଦେବାକୁ ହେବ ।

ଦଣ୍ଡାଣୁଜନିତ ଅତିସାର ରୋଗରେ ସଲଫାସିନ୍ ଇଞ୍ଜେକ୍ସନ ଓ ଡିଆସିନ୍ ବଟିକା ଦିଆଯାଇପାରେ । ରୋଗୀର ସମସ୍ତ ଉପସର୍ଗ ଦୂର ହେବା ପର୍ଯ୍ୟନ୍ତ ପ୍ରତିଦିନ ଡିଆସିନ୍ ବଟିକା ଓ ଏକ ଆମ୍ପୁଲ ଲେଖାଏ ଡିଆସିନ୍ ଇଞ୍ଜେକ୍ସନ ଦେବାକୁ ହେବ ।

ଗ୍ରୀଷ୍ମାତିସାର ରୋଗରେ ଗ୍ୟାଷ୍ଟ୍ରୋମୋନ୍ ଏବଂ ଚେନିୟମ୍ କୋ ଚୂନପାଣି ସହିତ ଦେଲେ ବିଶେଷ ଉପକାର ମିଳେ । ତରଳ ମଳଭେଦ କମିଗଲେ ସାଲଫୋସ ଅଳ୍ପ ଅଳ୍ପ ପରିମାଣରେ ଦିଆଯାଇପାରେ । ଏହାଦ୍ୱାରା କ୍ଷୁଧା ବୃଦ୍ଧି ହୁଏ ଏବଂ ପରିପାକ ଦୋଷ ଦୂର ହୋଇଥାଏ ।

ଉଣ୍ଡୁକପୁଚ୍ଛ ପ୍ରଦାହ (ଆପେଣ୍ଡିସାଇଟିସ୍)—

ଏହି ରୋଗର ଚିକିତ୍ସା ପାଇଁ ଶଲ୍ୟ ଚିକିତ୍ସା ପ୍ରଶସ୍ତ । ଶଲ୍ୟ ଚିକିତ୍ସା ଆରମ୍ଭ କରିବା ପୂର୍ବରୁ ଆଣ୍ଟିବାଇଓଟିକ୍ ଔଷଧ ଦିଆଯାଇପାରେ ।

ଏହି ରୋଗରେ ବିରେଚକ ଔଷଧ ବା ବସ୍ତି (ଏନିମା) ପ୍ରୟୋଗ କରିବା କ୍ଷତିକାରକ ।

ସପ୍ରୁ ଅତିସାର—

ଏହା ଏକପ୍ରକାର ଅତିସାର ରୋଗ । ଏହି ରୋଗରେ ଜିଭ ଓ ପାଟିରେ ଘା ହୋଇଯାଏ । ରୋଗୀର ଓଜନ କମି କମିଯାଏ । ରୋଗୀ ମଳ ପତଳା, ଫିକା, ଫେଣୁଆ, ଚିକ୍କଣିଆ ଦେଖାଯାଏ ଏବଂ ବହୁ ପରିମାଣରେ ହୁଏ । ଏହି ରୋଗର ବିଭିନ୍ନ ଅବସ୍ଥା ଅନୁଯାୟୀ ନିମ୍ନଲିଖିତ ଚିକିତ୍ସା ବ୍ୟବସ୍ଥା କରାଯାଇପାରେ । (୧) ପଥ୍ୟ ବିଧାନ (୨) ନିର୍ଜଳତାର ଚିକିତ୍ସା (୩) ଆରୋଗ୍ୟୋତ୍ତର ଚିକିତ୍ସା ।

ଦିନକୁ ଗ୍ୟାଷ୍ଟ୍ରୋମୋନ ବଟିକା ଦୁଇଥର, ଆଲବୋସାଇ, ଭାଇଟାଲ ଏସେନ୍ସ ସହିତ ଭୋଜନ ପୂର୍ବରୁ ଥରେ ଲେଖାଏଁ ପ୍ରୟୋଗ କରାଯିବା ଆବଶ୍ୟକ । ଦୁଧ ଫଳରସ ପଥ୍ୟ ଭାବରେ ଦେବାକୁ ହେବ । ଏ ଅବସ୍ଥାରେ ଅଟା ଓ ଗହମ ପ୍ରଭୃତି ଶ୍ୱେତସାରପ୍ରଧାନ ଖାଦ୍ୟ ସେବନ କରିବା ସମ୍ପୂର୍ଣ୍ଣ ନିଷେଧ ।

ଅନ୍ତ୍ରଶୂଳ—

ଏହା ସାଧାରଣତଃ ପେଟରେ ଏକ ଉଦ୍‌ବେଷ୍ଟନ କ୍ରିୟା ହେତୁ ହୋଇଥାଏ । କୋଷ୍ଠବଦ୍ଧତା, ପେଟରେ ଗ୍ୟାସ ଜମିଲେ ସାଧାରଣତଃ ଏହି ଲକ୍ଷଣ ଦେଖାଯାଇ-ଥାଏ । ଅନ୍ତ୍ରଶୂଳ ଜଠର ଓ ଅନ୍ତ୍ରମଣ୍ଡଳୀ ସ୍ଥଳରେ ହୋଇଥାଏ । ପେଟରେ ସ୍ଥଳବିଶେଷରେ ଚାପ ଦେଲେ ଶୂଳବେଦନା କମ୍ ହୋଇଯାଇଥାଏ । ଏହି ଶୂଳରୋଗରେ କାହାରି କୋଷ୍ଠକାଠିନ୍ୟ, କାହାରି ତରଳ ମଳଭେଦ ହୋଇଥାଏ । ଏହି ରୋଗର ରୋଗୀ-ମାନଙ୍କୁ ଉଷ୍ଣ ସ୍ଥାନ ଓ ଶାନ୍ତ ପରିବେଶ ମଧ୍ୟରେ ରଖାଇବା ଏକାନ୍ତ ଆବଶ୍ୟକ । ରୋଗର ଉଗ୍ରତା ଅବସ୍ଥାରେ କୌଣସି ଖାଦ୍ୟଦ୍ରବ୍ୟ ଦେବା ଅନୁଚିତ ।

ରୋଗର ପ୍ରତ୍ୟକ୍ଷ ନିର୍ଣ୍ଣୟ ଓ ଭେଦାତ୍ମକ ନିର୍ଣ୍ଣୟ ଦ୍ୱାରା ରୋଗ ନିର୍ଣ୍ଣୟ ଯଥାର୍ଥ ହେଲେ ଚିକିତ୍ସା କାର୍ଯ୍ୟ ସୁଗମ ହୋଇଥାଏ । ପ୍ରାକୃତିକ ପରିବେଶରେ ରଖି ଚିକିତ୍ସା କରିବା ଦ୍ୱାରା ରୋଗର ଉଗ୍ରତା ନ କମିଲେ ରୋଗୀକୁ ହସ୍‌ପିଟାଲରେ ରଖି ଚିକିତ୍ସା କରାଇବା ଅଧିକ ମଙ୍ଗଳକର ।

ଏହି ରୋଗୀର ପେଟ ଫାମିଲେ ସେକ ଦେବା, ବା ଗରମପାଣି ବୋତଲ ଚଳି ପେଟରେ ଗଡ଼ାଇବା ଦ୍ୱାରା ଚଳିପେଟର ବାୟୁ ବାହାରିଯାଏ । ରୋଗୀ ଆରାମ ଅନୁଭବ କରେ । ଏ ସ୍ଥଳରେ ରୋଗୀର କୋଷ୍ଠକାଠିନ୍ୟ ଥିଲେ ମ୍ୟାଗ୍‌ଫସ୍ ଓ ତରଳ ମଳଭେଦ ଥିଲେ ସେ ସ୍ଥଳରେ ଡିଆସ୍କିନ୍ ପ୍ରୟୋଗ କଲେ ସୁଫଳ ମିଳେ ।

କୃମି—

ଅନ୍ତ୍ରମଣ୍ଡଳୀରେ ସାଧାରଣତଃ ଦଣ୍ଡୀପୋକ (ଥ୍ରେଡ଼ ଓ୍ୱର୍ମ) ଗଣ୍ଡୁପଦ (ରାଉଣ୍ଡଓ୍ୱର୍ମ) ବକ୍ରକୃମି (ହୁକ୍‌ଓ୍ୱର୍ମ) କଣ୍ଟକ କୃମି (ପିନ୍ ଓ୍ୱର୍ମ) ଥାଆନ୍ତି । କୃମିମାନଙ୍କ ଦ୍ୱାରା ଆକ୍ରାନ୍ତ ରୋଗୀମାନଙ୍କର ସାଧାରଣତଃ ମିଛଭୋକ (ଅଳୀକ କ୍ଷୁଧା) ବା କ୍ଷୁଧା ନ ହେବା ଓ ଛୋଟ ପିଲମାନଙ୍କର କୃମି ହୋଇଥିଲେ ସେମାନେ ରାତିରେ ଶୋଇବା ସମୟରେ ଦାନ୍ତ ଗ୍ରେବାଇ ଥାଆନ୍ତି, ଚିଡ଼ିଚିଡ଼ା ପ୍ରକୃତିର ହୁଅନ୍ତି ଏବଂ ସେମାନଙ୍କର ପେଟ ବାହାରକୁ ବାହାରି ପଡ଼ିଥାଏ । ଏହି ରୋଗରେ ସ୍ଥଳବିଶେଷରେ ମୃଦୁଜ୍ୱର ଓ ରକ୍ତହୀନତା ଦେଖାଯାଇଥାଏ ।

ଏହିପରି ଅବସ୍ଥାରେ ଥରକୁ ଦୁଇଟି ଲେଖାଏଁ ପିପାରେଜ୍ ବଟିକା ଦିନକୁ ଚାରିଥର ଲେଖାଏଁ ପ୍ରୟୋଗ କଲେ ଗଣ୍ଡୁପଦ (ରାଉଣ୍ଡଓ୍ୱର୍ମ) ସୂତ୍ରକୃମି (ଥ୍ରେଡ଼ଓ୍ୱର୍ମ) ଦୂର କରିବାରେ ପ୍ରତ୍ୟକ୍ଷ ଫଳ ଦର୍ଶାଇଥାଏ । କୃମିଜନିତ ଅନ୍ୟାନ୍ୟ ଲକ୍ଷଣ ପାଇଁ ସାଲଫୋସ୍ ବ୍ୟବହାର କଲେ ଉତ୍ତମ ଫଳ ମିଳିଥାଏ ।

ଯକୃତ୍ ଓ ପ୍ଲୀହା—

ଶରୀର ଭିତରେ ଯକୃତ୍ ହେଉଛି ଏକ ମୁଖ୍ୟ କ୍ରତୁ (ଅରଗାନ) । ଏହା ଖାଦ୍ୟ ପଦାର୍ଥର ଶ୍ୱେତସାର, ଚର୍ବି, ଛେନାଜାତୀୟ ଖାଦ୍ୟର ଚୟାପଚୟ କାର୍ଯ୍ୟରେ

ସାହାଯ୍ୟ କରିଥାଏ । ବହୁ କାରଣରୁ ସ୍ଥଳବିଶେଷରେ ଯକୃତ୍‌ଟି ବଢ଼ିଯାଏ, ଯଥା– ମ୍ୟାଲେରିଆ, ଯକୃତ୍‌ରେ ଚର୍ବି ଜମିଯିବା ଓ ଯକୃତ୍‌ପ୍ରଦାହ । ସାଧାରଣତଃ ଯକୃତ୍ ବିକୃତି ଘଟିଲେ ଅଗ୍ନିମାନ୍ଦ୍ୟ, ପାଟିରେ ଲୁହା ବା ତମ୍ବାଳିଆ ସ୍ୱାଦ, ପିତ୍ତବହୁଳତା, କୋଷ୍ଠକାଠିନ୍ୟ, ସ୍ଥଳବିଶେଷରେ ତରଳ ମଳଭେଦ ଦେଖାଦେଇଥାଏ । ଏ କ୍ଷେତ୍ରରେ ରୋଗର ମୂଳକାରଣ ପ୍ରଥମେ ନିଶ୍ଚିତ ରୂପେ ନିର୍ଣ୍ଣୟ କରିବା ଆବଶ୍ୟକ ।

ଏହି ରୋଗୀମାନଙ୍କର ପଥ୍ୟ ପାଇଁ ମଝିରେ ମଝିରେ ଫଳରସ, ଲହୁଣୀ ନ ଥିବା ଦୁଧ ଦେବା ଆବଶ୍ୟକ । ରୋଗୀକୁ ଯେଉଁ ପଥ୍ୟ ଦିଆଯାଏ ତାହା କେତେଦୂର ରୋଗୀର ସାତ୍ମୀକରଣ କ୍ରିୟାରେ ଲାଗୁଛି, ତାହାରି ଅନୁପାତରେ ଚିକିତ୍ସାର ସଫଳତା ନିର୍ଭର କରେ । ରୋଗୀକୁ ଏ ଅବସ୍ଥାରେ ପୂର୍ଣ୍ଣ ବିଶ୍ରାମ ଦେବା ଆବଶ୍ୟକ । ବିଶେଷ ମସଲା, ତେଲ ବା ଘିଅ ଦିଆଯାଇଥିବା ଖାଦ୍ୟ ଖାଇବା ବା କୌଣସି ପ୍ରକାରେ ମଦ୍ୟପାନ କରିବା ସମ୍ପୂର୍ଣ୍ଣ ଅନୁଚିତ । ରୋଗୀର ଯେପରି ନିୟମିତ କୋଷ୍ଠଶୁଦ୍ଧି ହୁଏ, ସେଥିପାଇଁ ଦୃଷ୍ଟି ରଖିବାକୁ ହେବ । ସ୍ଥଳବିଶେଷରେ ମୃଦୁ ବିରେଚକ ଔଷଧ ଦେଇ ବିରେଚନ କରାଇବାକୁ ହେବ ।

ଉତ୍ତମ କ୍ଷୁଧା, ଖାଦ୍ୟଦ୍ରବ୍ୟ ଉତ୍ତମ ରୂପେ ଜୀର୍ଣ୍ଣ ହେବା ଏବଂ ତଦନୁଯାୟୀ ସାତ୍ମୀକରଣକ୍ରିୟା ଦ୍ୱାରା ଶରୀର ବଳ ଓ ବର୍ଣ୍ଣ ବଢ଼ିବା ହେଉଛି–ଯକୃତ ନିରୋଗ ହେବାର ଲକ୍ଷଣ । ଯକୃତ୍ କାର୍ଯ୍ୟକୁ ଉନ୍ନତ କରିବା ପାଇଁ ସାଇଫସ୍, ଗ୍ୟାଷ୍ଟ୍ରୋମୋନ ଏବଂ ହାରବାଲ ବିଟରସ୍ (ହାର୍ବିଟାରସ୍) ଏକାନ୍ତ ଉପଯୋଗୀ । ଯଦି ମ୍ୟାଲେରିଆ-ଜନିତ ଯକୃତ୍ ବିକୃତି ହୋଇଥାଏ, ସେ ସ୍ଥଳରେ ଆଇଓକ୍ୱିଇନ ବ୍ୟବସ୍ଥା କରିବା ଆବଶ୍ୟକ ।

ପିଲମାନଙ୍କର ଯକୃତ୍ ରୋଗରେ ଉପରୋକ୍ତ ବ୍ୟବସ୍ଥା ଅନୁଯାୟୀ ଔଷଧ ପ୍ରୟୋଗ କରାଯାଇପାରେ, ମାତ୍ର ସେଥିପାଇଁ ଶିଶୁମାତ୍ରା ପ୍ରୟୋଗ କରିବାକୁ ହେବ ।

ପିତ୍ତ ଅଶ୍ମରି–

ସମୟ ସମୟରେ ପିତ୍ତକୋଷରେ ଅଶ୍ମରି (ପଥର) ଜନ୍ମି କଠିନ ସମସ୍ୟା ସୃଷ୍ଟି କରିଥାଏ । ସମୟ ସମୟରେ ଉକ୍ତ ପଥରଟି ବଡ଼ ହୋଇ ପିତ୍ତନଳି ବା ପିତ୍ତସ୍ରାବ କାର୍ଯ୍ୟରେ ବାଧା ସୃଷ୍ଟି କରେ । ପିତ୍ତବାହିକା ଅବରୁଦ୍ଧ ହୋଇଗଲେ ରୋଗୀ ପିତ୍ତଶୂଳ-ଜନିତ ପୀଡ଼ା ଭୋଗ କରେ । ଏହି ପୀଡ଼ା ହଠାତ୍ ହୋଇପାରେ ଏବଂ ଏହି ପୀଡ଼ା ଡାହାଣ ବାହୁର ତଳରେ ଥିବା ପର୍ଶୁକା ଅସ୍ଥି ଅଞ୍ଚଳରେ ସୀମିତ ରହେ । ରୋଗୀର ଯନ୍ତ୍ରଣା ତୀବ୍ର ହେଲେ ରୋଗୀର ଘନଘନ ଝାଳସ୍ରାବ ହୁଏ । ନାଡ଼ୀର ସ୍ପନ୍ଦନ, କ୍ଷୀଣ ଓ ଚଞ୍ଚଳ ହୁଏ । ସବୁବେଳେ ବାନ୍ତି ବାନ୍ତିଭାବ ରହେ । ଏ ଅବସ୍ଥାରେ ଚମଡ଼ା ଫିକା ପଡ଼ିଯାଏ । ସମୟ ସମୟରେ କାମଳ ରୋଗୀର ଚମଡ଼ା ପରି ହଳଦିଆ ଦେଖାଯାଏ । କାମଳ ରୋଗୀର ଆଖି ପରି ଆଖି ଡୋଳା ହଳଦିଆ ଦିଶେ ।

ଏହି ରୋଗର ଚିକିତ୍ସା ପାଇଁ ଶୂଳନାଶକ ଔଷଧ ସଙ୍ଗେ ଅନ୍ୟ ବ୍ୟବସ୍ଥା କରିବାକୁ ପଡ଼ିଥାଏ । ଏ ରୋଗରେ ସର୍ବାଦୌ ରୋଗୀର ପଥ୍ୟ ଉପରେ ଧ୍ୟାନ ଦେବାକୁ ହୋଇଥାଏ । ହାର୍ବୋ ବିଟର ଔଷଧ ସାହାଯ୍ୟରେ କୋଷ୍ଠଶୁଦ୍ଧି କରାଇବା ଆବଶ୍ୟକ । କୌଣସି ସମୟରେ ମାତ୍ରାତିରିକ୍ତ ଖାଦ୍ୟ ଖାଇବା ଅନୁଚିତ । ଖାଦ୍ୟ ତେଲ ଓ ଘିଅର ବ୍ୟବହାରକୁ ସର୍ବତୋଭାବରେ ବର୍ଜନ କରିବାକୁ ପଡ଼ିବ । ଫଳରସ ପ୍ରଚୁର ପରିମାଣରେ ଦିଆଯାଇ ପାରେ । ଲଘୁ ବ୍ୟାୟାମ ବିଶେଷତଃ ଚାଲବୁଲ କିଛି ପରିମାଣରେ କରାଯାଇପାରେ, ବିଶେଷତଃ ଶୂଳ ମାରିବା ମଧ୍ୟବର୍ତ୍ତୀ ସମୟ ମଧ୍ୟରେ ।

ପ୍ଲୀହା—

ମ୍ୟାଲେରିୟା ରୋଗିଥିବା ରୋଗୀମାନଙ୍କଠାରେ ପ୍ଲୀହାବୃଦ୍ଧି ଦେଖାଯିବା ସ୍ୱାଭାବିକ । ପ୍ଲୀହାର ବୃଦ୍ଧି ଘଟିଥିଲେ ଦୁଇସପ୍ତାହ ପର୍ଯ୍ୟନ୍ତ ଆଇଓକୁଇନ ଓ ହାର୍ବୋଇ-ବିଟରସ (ହାର୍ବିଟାରସ) ପ୍ରୟୋଗ କରିବା ଆବଶ୍ୟକ । ଏହି ରୋଗରେ ସାଧାରଣତଃ ରକ୍ତହୀନତା, କ୍ଷୁଧାନାଶ, ଦୁର୍ବଳତା ପ୍ରଭୃତି ଲକ୍ଷଣ ଦେଖାଯାଇଥାଏ । ଏହି ଅବସ୍ଥାରେ "ଆଲବୋସାଙ୍ଗ" ହେଉଛି ସୁନିର୍ବାଚିତ ଔଷଧ ।

ମ୍ୟାଲେରିୟା ସଂକ୍ରମଣ—

ଏନୋଫିଲିସ ନାମକ ମଶା ଜାତିର ମାଈ ମଶା କାମୁଡ଼ିବା ଦ୍ୱାରା ଏହି ଜ୍ୱର ହୋଇଥାଏ । ଏହା ତୀବ୍ର ବା ଲଘୁ କୋପ ସହିତ ଦେଖାଯାଏ ।

ପ୍ରଥମେ ଖୁବ୍ ଶୀତ ଲାଗିବା, ଖୁବ୍ ଜ୍ୱର ହେବା, ଝାଳ ଦେବା ପ୍ରଭୃତି ଲକ୍ଷଣ ପ୍ରକାଶ ପାଏ । ଏହି ଆକ୍ରମଣ ଦିନେ ଛଡ଼ା ଦିନେ, ଚାରିଦିନରେ ଥରେ ହୋଇପାରେ ।

ଆଇଓକୁଇନ ସାହାଯ୍ୟରେ ଏହି ଜ୍ୱରର ଚିକିତ୍ସା କରାଯାଇପାରେ । ଦିନକୁ ଗୋଟିଏ ବା ଦୁଇଟି ବଟିକା ତିନି ଚାରିଦିନ ପର୍ଯ୍ୟନ୍ତ ଦେବାକୁ ହୋଇଥାଏ । ଗର୍ଭିଣୀ ସ୍ତ୍ରୀ ଆଇଓକୁଇନ୍ ଦେବା ନିଷିଦ୍ଧ । ଏହାର କାରଣ ଏଥିରେ ଥିବା ଉପାଦାନରେ ଜରାୟୁ ଉତ୍ତେଜିତ ହୋଇଥାଏ । ଏହାର ସ୍ୱାଦୁ ପିତା, ଏଣୁ ପିଲାମାନଙ୍କୁ ଦେବାକୁ ହେଲେ ମହୁ ସହିତ ମିଶାଇ ଖାଇବାକୁ ଦେଲେ ସ୍ୱାଦ କଷ୍ଟ ରହେ ନାହିଁ ।

ଗନୋରିୟା (ଔପସର୍ଗିକ ମେହ)—

ଗନୋକୋକାଲ୍ ନାମକ ଜୀବାଣୁର ସଂକ୍ରମଣ ଦ୍ୱାରା ଏ ଜାତୀୟ ଯୌନରୋଗ ହୋଇଥାଏ । ଏହାଦ୍ୱାରା ସମସ୍ତ ମୂତ୍ର ପ୍ରଜନନ ପ୍ରକ୍ରିୟା, ବୃକ୍କ, ବସ୍ତି, ମୂତ୍ରନାଳୀ ପ୍ରଭୃତି ଆକ୍ରାନ୍ତ ହୋଇଥାଏ । ଏହି ରୋଗର ପ୍ରାରମ୍ଭରେ ମୂତ୍ରନାଳୀରେ ଫୁଲିହେବା, ଜଳାପୋଡ଼ା ହେବା, ମୂତ୍ରକ୍ଷରଣରେ କଷ୍ଟ ହେବା, ସମୟ ସମୟରେ ମୂତ୍ରମାର୍ଗ ଦେଇ ପୂଜ ପଡ଼ିବା ପ୍ରଭୃତି ଲକ୍ଷଣ ଦେଖାଯାଇଥାଏ । ଯଥାଶୀଘ୍ର ଚିକିତ୍ସା ବ୍ୟବସ୍ଥା ପ୍ରାରମ୍ଭିକ ଅବସ୍ଥାରେ କରାଗଲେ, ଏହାର ଚିକିତ୍ସା ସୁଗମ ଓ ସରଳ ହୋଇଥାଏ । ଏହି ରୋଗର ଚିକିତ୍ସାରେ ସାମାନ୍ୟ ଅବହେଳା

ହଲେ ଏବଂ ରୋଗଟି ପୁରୁଣା ହୋଇଗଲେ, ଏହି ରୋଗର ଦୋଷ ଆଣ୍ଠୁଗଣ୍ଠି, ଆଖି, ନାକ, ହୃତ୍‌ପିଣ୍ଡ, ମୂତ୍ରନଳୀ ନିକୋଚନ Urethral Stricture ପ୍ରଭୃତି ବିବିଧ ବିକାର ସୃଷ୍ଟି କରିପାରେ । ଏହିପରି ଅବସ୍ଥାରେ ଆଇଓବିନ୍ , ବ୍ରହ୍ମାଡାଇନ ଦୁଇଟି ଲେଖାଏ ବଟିକା ପ୍ରତିଦିନ ଦୁଇ ତିନି ମାସ ବ୍ୟବହାର କରିବାକୁ ପଡ଼ିଥାଏ । ରୋଗ ପୁରୁଣା ହୋଇଯିବା ହେତୁ ଯେଉଁ ଦୁର୍ବଳତା ଦେଖାଯାଏ ସେଥିପାଇଁ ଆଇବୋସାଙ୍ଗ ବ୍ୟବହାର କରାଯାଇ ପାରେ । ପରିସ୍ରାର ଜଳାପୋଡ଼ା ଦୂର କରିବା ପାଇଁ ହିମୋପ୍ଲେକ୍‌ସ ବଟିକା ପ୍ରତି ଚାରିଘଣ୍ଟା ଅନ୍ତରରେ ପ୍ରୟୋଗ କଲେ ସୁଫଳ ମିଳେ । ବାରମ୍ବାର ମୂତ୍ରପରୀକ୍ଷା ଦ୍ୱାରା ମୂତ୍ରରୁ ପୂଜ ଓ ଗନୋକୋକାଇ୍‌ ଦୂରହେଉଛି କି ନାହିଁ ପରୀକ୍ଷା କରି ନେବା ଆବଶ୍ୟକ । ପରିସ୍ରାରୁ ପୂଜ ପଡ଼ିବା ବନ୍ଦ ହୋଇଗଲେ ରୋଗ ଭଲ ହୋଇଗଲା ବୋଲି ଭାବିବା ସମୀଚୀନ ନୁହେଁ ।

ସ୍ତ୍ରୀଲୋକମାନଙ୍କର ଗନୋରିୟା ହେଲେ ସେ ସ୍ଥଳରେ ଅଧିକ ଯତ୍ନ ଓ ସାବଧାନତା ସହ ଚିକିତ୍ସା କରିବା ଆବଶ୍ୟକ । ସେ କ୍ଷେତ୍ରରେ ବାହ୍ୟ ଓ ଆଭ୍ୟନ୍ତର ଚିକିତ୍ସା କରିବାକୁ ହେବ । ମେଥିଲଏଡ଼ ଡୁସ୍ ଦିନକୁ ଦୁଇଥର ଲେଖାଏ ଦେବା ଆବଶ୍ୟକ । ସ୍ଥାନିକ ପରିସ୍କୃତ ପ୍ରତି ଧ୍ୟାନ ଦେବା ଆବଶ୍ୟକ । ଅନ୍ୟାନ୍ୟ ଚିକିତ୍ସା ବ୍ୟବସ୍ଥା ପୁରୁଷ ଲୋକର ଅନୁରୂପ କରିବାକୁ ହେବ ।

ଏହି ଅବସ୍ଥାରେ ରୋଗୀ ପଥ୍ୟାପଥ୍ୟ ପ୍ରତି ବିହିତ ଦୃଷ୍ଟିଦେବାକୁ ପଡ଼ିବ । ଖାଦ୍ୟ ଲଘୁ ଓ ବିଶେଷ ତେଲ, ମସଲା ବର୍ଜିତ ହେବା ଆବଶ୍ୟକ । ଏହି ରୋଗର କୌଣସି ଅବସ୍ଥାରେ ମଦ୍ୟପାନ କରିବା ଅନୁଚିତ । ସାଧାରଣ ନିୟମ ଭାବେ ଛଅଘଣ୍ଟା ଅନ୍ତରରେ ଆଇବୋସାଙ୍ଗ ଦିଆଯାଇପାରେ ।

ସିଫିଲିସ୍ (ଫିରଙ୍ଗି)—

ଟ୍ରିପୋନିମା ପାଲିଡ଼ିୟମ୍ ନାମକ ଏକ ଜୀବାଣୁ ସଂକ୍ରମଣଦ୍ୱାରା ଏହି ରୋଗ ଆକ୍ରମଣ କରିଥାଏ । ଏହା ଉଗ୍ର ଅନୁଗ୍ର, ଜନ୍ମଜାତ ବିଭିନ୍ନ ବିକାର ମାଧ୍ୟମରେ ପ୍ରତିଫଳିତ ହୋଇଥାଏ । ଏହି ରୋଗାକ୍ରାନ୍ତ ସ୍ତ୍ରୀ ସହିତ ସଂସର୍ଗଯୋଗୁଁ କିଛିଦିନ ପରେ ଏହି ରୋଗର ପ୍ରଥମ ଲକ୍ଷଣ ଜନନେନ୍ଦ୍ରିୟରେ ଏକ କ୍ଷତରୂପରେ ପ୍ରକାଶ ପାଇଥାଏ । ଏହା କ୍ରମଶଃ ବଢ଼େ ଓ ଶକ୍ତ ଦଣାପଡ଼େ । ଆଖପାଖ ଅଞ୍ଚଳର ଗ୍ରନ୍ଥିଗୁଡ଼ିକ ବଡ଼ ହୋଇଯାଏ । ଏହାକୁ ଏହି ରୋଗର ପ୍ରାଥମିକ ଅବସ୍ଥା ବୋଲି କୁହାଯାଏ । ତାପର ଅବସ୍ଥାରେ ଗ୍ରନ୍ଥିଗୁଡ଼ିକ ଫୁଲି ଉଠେ । ଜ୍ୱର ହୁଏ, ପ୍ରଦାହଜନିତ ଅନ୍ୟାନ୍ୟ ଉପସର୍ଗ, ଦ୍ୱିତୀୟ ଅବସ୍ଥାର ଲକ୍ଷଣ ସ୍ୱରୂପ ପ୍ରକାଶ ପାଏ । ରୋଗର ତୃତୀୟ ଅବସ୍ଥାରେ ସ୍ନାୟୁଗତ ବିକାର ଯଥା—ଆଂଶିକ ଅଚଳନ , ପକ୍ଷାଘାତ ପ୍ରଭୃତି ଲକ୍ଷଣ ପ୍ରକାଶ ପାଏ ।

ଏହି ରୋଗର ଚିକିତ୍ସା ପାଇଁ ଆମର ସ୍ୱତନ୍ତ୍ର ଔଷଧ ହେଉଛି ଆଇଓବିନ୍ । ପ୍ରତି ଚବିଶ ଘଣ୍ଟା ଅନ୍ତରରେ ମଧ୍ୟ ଆଇଓବିନ୍ ଇଞ୍ଜେକସନ ଦିଆଯାଇପାରେ । ଏହି ନିୟମରେ ଗୋଟିଏ ସପ୍ତାହ ଚିକିତ୍ସା କରି ପରେ କେବଳ ଆଇଓବିନ୍ ଖାଇବାକୁ

ଦେଲେ ଚଳିବ । ସିଫିଲିସ୍‌ଜନିତ କ୍ଷତ ଦୂରୀକରଣ ପାଇଁ ହେମୋପ୍ଲେକ୍‌ସ ଦିଆଯାଇ-ପାରେ । କ୍ଷତ ନାଶନ ପାଇଁ ଏଥିସହିତ ହେମୋପ୍ଲେକ୍‌ସ ବଟିକା ମଧ୍ୟ ଖାଇବାକୁ ଦିଆଯାଇପାରେ । ଦିନକୁ ୩।୪ ଥର । ରୋଗର ଲକ୍ଷଣ କମି ଆସିଲେ ଔଷଧମାତ୍ରା କମାଇ ଦିଆଯାଇପାରେ । ଏହି ଲକ୍ଷଣ କମିଗଲେ କିଛିଦିନ ପର୍ଯ୍ୟନ୍ତ ମଧ୍ୟ ଆଉଓବିନ୍ ପ୍ରୟୋଗ କରିବାକୁ ପଡ଼ିବ । ଏହା ଦ୍ୱାରା ନୂତନ, ପୁରାତନ, ବଂଶାନୁଗତ ଭାବେ ଆସିଥିବା ସିଫିଲିସ୍ ରୋଗ ଦୂର ହୋଇଥାଏ ।

ଛାତି ଓ ଫୁସ୍‌ଫୁସ୍ ସଂକ୍ରମଣ—

ଶ୍ୱାସନଳୀର ଉପର ଅଂଶର ସଂକ୍ରମଣକୁ ଶ୍ୱସନିକାପ୍ରଦାହ (ବ୍ରଙ୍କାଇଟିସ୍)—କୁହାଯାଇଥାଏ । ଛାତିର ଉପରିଭାଗ ଚିପିହେବା, ଭାରବୋଧ ହେବା ଓ ଅସ୍ୱସ୍ତିକର ଲାଗିବା ଏହି ରୋଗର ପୂର୍ବାଭାସର ଲକ୍ଷଣ । ଏହି ରୋଗରେ ଶୁଖିଲା କାଶହେବା, ଜ୍ୱରର ଉତ୍ତାପ ବୃଦ୍ଧି ହେବା ପ୍ରଭୃତି ଲକ୍ଷଣ ପ୍ରକାଶ ପାଏ । କ୍ରମଶଃ ଶୁଖିଲା କଫ ତରଳ କଫରେ ପରିଣତ ହୋଇପାରେ ଏବଂ ଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟବୋଧ ହୋଇଥାଏ । ଏହିପରି ଅବସ୍ଥାରେ ବିଶେଷ ତତ୍ପରତା ସହିତ ଚିକିତ୍ସା କାର୍ଯ୍ୟ କରିବା ଆବଶ୍ୟକ । କଫଲୀନ ଓ ହରମୋପାଇରିନ୍ ପ୍ରତି ଗୋଟିଏ ଘଣ୍ଟା ଅନ୍ତରରେ ପ୍ରାରମ୍ଭିକ ଅବସ୍ଥାରେ ପ୍ରୟୋଗ କରିବା ବିଧେୟ । ଯଦି ଏ ସ୍ଥିତିରେ ଉତ୍ତାପ ବେଶି ରହୁଥାଏ ତାହାହେଲେ ହେମୋପ୍ଲେକ୍‌ସ ଏହା ସହିତ ଦିଆଯାଇ ପାରେ । ଏହି ଅବସ୍ଥାରେ ରୋଗୀକୁ ବିଛଣାରେ ଶୋଇ-ରହିବାକୁ ପଡ଼ିବ ଏବଂ ପ୍ରଚୁର ପରିମାଣରେ ସିଝାପାଣି ପିଇବାକୁ ହେବ । ରୋଗୀର ଖାଦ୍ୟ ତରଳ ହେବ—ବିଶେଷତଃ ଦୁଗ୍ଧ ପଥ୍ୟରୂପେ ଦେବା ପ୍ରୟୋଜନ । ଡେସରୁ ଏବଂ ରୁବ୍‌ଜନ ଛାତି ଓ ପିଠିରେ ମାଲିସ୍ କଲେ ଛାତିର ପୀଡ଼ା କମିଯାଏ ଏବଂ କଫ ତରଳ ହୋଇ ବାହାରିଯାଏ । ଏହା କରିବାଦ୍ୱାରା ଜଳୀୟ ସେକଦେବା ବା ଆଣ୍ଟି ଫ୍ଲୋଜେଷ୍ଟିକ୍ ଛାତିରେ ଲଗାଇବା ଆବଶ୍ୟକ ପଡ଼େ ନାହିଁ ।

ପୁରୁଣା ଶ୍ୱସନିକା ପ୍ରଦାହ ରୋଗରେ ମେଡ୍ରିଟାବ୍ ଦେବା ଅଧିକ ଉପଯୋଗୀ ।

ଉରଃଶୋଥ (ପ୍ଲୁରିସି)—

ଏହି ରୋଗର ପ୍ରାଥମିକ ଆକ୍ରମଣ ଅବସ୍ଥାରେ ଛାତିରେ ଛୁଞ୍ଚିରେ ଫୋଡ଼ିଲାପରି ଯନ୍ତ୍ରଣା ହୁଏ, ନିଃଶ୍ୱାସ ମାରିବା ବା କଫ ବାହାର କରିବା ସମୟରେ ବିଶେଷ କଷ୍ଟ ହୁଏ । ଏହା ସମୟ ସମୟରେ ଉଗ୍ରତାର ସହ ଆକ୍ରମଣ କରେ, ଶରୀରରେ ଜ୍ୱରର ଉତ୍ତାପ ୧୦୧ ପର୍ଯ୍ୟନ୍ତ ରହେ । କଫ ତରଳି ବାହାରିବାକୁ ଆରମ୍ଭ କଲେ ଛାତିର ପୀଡ଼ା କମିବାକୁ ଆରମ୍ଭ କରେ । କିନ୍ତୁ ଶ୍ୱାସକଷ୍ଟ ଲାଗି ରହେ । ଜ୍ୱରର ଉତ୍ତାପ ବେଶୀ

ରହେ, ସାମାନ୍ୟ ପରିମାଣରେ କଫ ବାହାରେ । ରୋଗୀର ଲକ୍ଷଣରୁ ଏହାକୁ ଆପାତତଃ ନିର୍ଣ୍ଣୟ କରିବାକୁ ହୋଇଥାଏ । ଏହି ସମୟରେ ଏକ୍ସରେ ଦ୍ୱାରା ପରୀକ୍ଷା କରାଇ ନେଲେ ରୋଗର ନିଶ୍ଚିତ ନିର୍ଦ୍ଧାରଣ ସୁଗମ ହୁଏ । ଏହି ରୋଗରେ ଅନ୍ତଃ ପୂୟମୟତା ବହୁଦିନ ପର୍ଯ୍ୟନ୍ତ ଲାଗିରହେ, ବରାବର ଓଜନର ହ୍ରାସ ଘଟୁଥାଏ । ଏହିପରି ଅବସ୍ଥାରେ ଶଲ୍ୟୋପଚାର ଦ୍ୱାରା ପୂଜ ବାହାର କରିଦେଇ ପ୍ରତିଜୀବୀ ଔଷଧ (ଆଣ୍ଟିବାଇଓଟିକ୍) ଦେଇ ପୂଜ ନିରୋଧ କରାଯାଇଥାଏ । ହିମୋପ୍ଲେକ୍ସ ଏବଂ ହିମୋପାଇରିନ୍ ଏହି ଅବସ୍ଥା ପାଇଁ ମୁଖ୍ୟ ଔଷଧ ଭାବରେ ବିବେଚିତ । ଏହି ଅବସ୍ଥାରେ ତେଲକୁ ଛାତି ଓ ପିଠିରେ ବ୍ୟବହାର କରିବା ଦ୍ୱାରା, ବେଦନା ତ ନିଶ୍ଚୟ କମିଯାଏ ଓ କଫ ଉତ୍ପାଦନ ମଧ୍ୟ କମାଇଦିଏ । ଏହିପରି ଅବସ୍ଥାରେ ରୋଗଜନିତ ଦୁର୍ବଳତା ଦୂର କରିବାପାଇଁ ମଧ୍ୟ ମେଡ୍ରିଟାବ୍ ଦିଆଯାଇପାରେ । ଏହି ରୋଗର ଚିକିତ୍ସା ପାଇଁ ସମୟ ସମୟରେ ଯକ୍ଷ୍ମା ବିରୋଧୀ ଚିକିତ୍ସା ମଧ୍ୟ କରିବାକୁ ପଡ଼ିଥାଏ ।

ରାଜଯକ୍ଷ୍ମା–

ସ୍ୱତନ୍ତ୍ର ସ୍ୱାସ୍ଥ୍ୟନିବାସରେ ଏହି ରୋଗର ଚିକିତ୍ସା କରିବା ସୁବିଧାଜନକ । ସେପରି ସ୍ଥଳରେ ରାସାୟନିକ ଚିକିତ୍ସା ମଧ୍ୟ ବିଶେଷ ଉପଯୋଗୀ ଭାବରେ କାର୍ଯ୍ୟ କରିଥାଏ । ଏହି ରୋଗରେ ଜ୍ୱର ଓ କଫଥିବା ଅବସ୍ଥାରେ ବିଶ୍ରାମ ଓ ପୁଷ୍ଟିକର ଖାଦ୍ୟ ପ୍ରୟୋଗ ଏକାନ୍ତ ଉପଯୋଗୀ ହୋଇଥାଏ । ରୋଗର ପ୍ରାରମ୍ଭ ଅବସ୍ଥାରେ ରୋଗୀ ନିଜକୁ ବିଶେଷ ଦୁର୍ବଳ ମନେ କରେ । ସାମାନ୍ୟ କାମ କଲେ ହାଲିଆ ହୋଇପଡ଼େ । ଏହି ରୋଗରେ ରାତିରେ ବିଶେଷ ଝାଳବହେ ଓ ରୋଗୀର କ୍ଷୁଧା କମି କମିଯାଏ । ସବୁ ସମୟରେ କଫ ଅଳ୍ପ ଅଳ୍ପ କରି ବାହାରେ । ଏ ରୋଗରେ ରକ୍ତହୀନତା ଜନ୍ମିବା ଏକ ପ୍ରଧାନ ଲକ୍ଷଣ । ରୋଗଟି ପୁରୁଣା ହେବା ସଙ୍ଗେ ସଙ୍ଗେ ପ୍ରତିଦିନ ସନ୍ଧ୍ୟାରେ ବଢ଼େ । କଫ ବାହାରିବା କଷ୍ଟକର ହୁଏ । ଖୁବ୍ କାଶି ଟାଣିହେଲେ କଫ ବାହାରେ, ଏଣୁ ଅନେକ ସମୟରେ କଫ ଦେହରେ ରକ୍ତ ଦାଗ ଦେଖାଦିଏ ।

ଏହି ରୋଗରେ ରୋଗୀର ଶକ୍ତି ସଂରକ୍ଷଣପାଇଁ ଆଲବୋସାଙ୍ଗ ନିୟମିତରୂପେ ବ୍ୟବହାର କରିବା ଆବଶ୍ୟକ । ଯଦିଓ ଆଲବୋସାଙ୍ଗ ପ୍ରତି ରୋଗରେ ଦିଆଯାଇ-ଥାଏ, କିନ୍ତୁ ଏ ରୋଗରେ ମୁଖ୍ୟ ଭାବରେ ପ୍ରୟୋଗ କରିବା ଆବଶ୍ୟକ । ରୋଗର ପ୍ରାଥମିକ ଆକ୍ରମଣ ଅବସ୍ଥାରେ ଆଲବୋସାଙ୍ଗ ପ୍ରୟୋଗ ବିଶେଷ ଫଳପ୍ରଦ ହୋଇ-ଥାଏ । ଯଦି ରୋଗୀକୁ କୌଣସି ଯକ୍ଷ୍ମା ସ୍ୱାସ୍ଥ୍ୟନିବାସ ପଠାଇବା ସମ୍ଭବ ନୁହେଁ, ସେପରି ସ୍ଥଳରେ ରୋଗୀକୁ ଗୋଟିଏ ବଗିଚାରେ ରଖାଇ ଦିଆଯାଇପାରେ । ସେଠାରେ ରୋଗୀ ପ୍ରଚୁର ପରିମାଣରେ ଅମ୍ଳଜାନ ପାଇବା ସମ୍ଭବପର ହୋଇଥାଏ । ରୋଗୀର

କଫ ନିଷ୍କାସନ ପାଇଁ ନିୟମିତ ଭାବରେ ମେଡ଼ିଟାବ୍ ଦିଆଯାଇପାରେ । କଫରେ ରକ୍ତପଡ଼ିବାର ଚିକିତ୍ସା କରିବାକୁ ହେଲେ ଚିନିୟମକୋ, ଭାଇଟାଲ ଏସେନସ ସହିତ ପ୍ରୟୋଗ କରାଯାଇପାରେ । ଓଜନ ହ୍ରାସ ଅବସ୍ଥାର ଦୂରୀକରଣ ପାଇଁ ଫଳରସ, ଦୁଧ ଓ ପୁଷ୍ଟିକାରକ ଔଷଧ ସମୂହ ପ୍ରୟୋଗ କରାଯାଇପାରେ ।

ହୁପିଂ କଫ—

ଶିଶୁମାନଙ୍କୁ ଏହି ରୋଗ ସଂକ୍ରାମକ ରୋଗ ଭାବରେ ଆକ୍ରମଣ କରିଥାଏ । ଏହି ରୋଗ ଆକ୍ରମଣ କଲେ ଶିଶୁମାନଙ୍କର ଛାତିରେ ଏକ ହୁପ୍ ହୁପ୍ ଶବ୍ଦ ହୁଏ । କାଶ ହେଲେ ବହୁ ଟାଣିହୋଇ ଶେଷରେ ଅଠାଳିଆ କଫସ୍ରାବ ହୁଏ । ଏହି ରୋଗର ପ୍ରଭାବ ଶୋଇବା ସମୟରେ, ରାତିରେ ଓ ଖାଇବା ପରେ ବିଶେଷ ଭାବରେ ଦେଖାଯାଇଥାଏ । ଅତି କାଶି କାଶି ସମୟରେ ପିଲାଙ୍କ ଆଖିକୁ ରକ୍ତଚହକି ଆସେ । ରୋଗ ଆକ୍ରମଣର ଉଗ୍ରତା ଓ ଲଘୁତା ଅନୁଯାୟୀ କାଶ ହୋଇଥାଏ । ଗଡ଼ାଏ କଫ ବାହାରି ନ ଯିବା ପର୍ଯ୍ୟନ୍ତ ରୋଗୀ ଆଶ୍ୱସ୍ତ ହୋଇପାରେ ନାହିଁ । ଅନେକ ସମୟରେ ରୋଗୀ କାଶି କାଶି ଖାଇବା ଜିନିଷ ବାନ୍ତିକରି ପକାଇଲେ ଶାନ୍ତି ପାଏ ।

ଏହି ରୋଗ ଗୋଟିଏ ସଂକ୍ରାମକ ରୋଗ ହୋଇଥିବାରୁ ଏବଂ ଶିଶୁମାନଙ୍କୁ ବିଶେଷ ଭାବରେ ଆକ୍ରମଣ କରୁଥିବାରୁ, ଏହି ରୋଗୀକୁ ଅନ୍ୟ ପିଲାଙ୍କଠାରୁ ସତନ୍ତ୍ର ଭାବରେ ରଖିବା ଆବଶ୍ୟକ । ଏହି ବ୍ୟବସ୍ଥାରେ ରୋଗୀକୁ ଚଲପ୍ରେରା କରିବାକୁ ନ ଦେଇ ବିଛଣାରେ ଆବଦ୍ଧ ରଖିବା ଆବଶ୍ୟକ । ରୋଗୀର ଶୋଇବା ଘରକୁ ଯେପରି ଉପଯୁକ୍ତ ଆଲୋକ ଓ ପବନ ଆସେ ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ଯଦି ରୋଗୀର ବେଶି ବାନ୍ତି ହେଉଥାଏ , ତାହାହେଲେ ରୋଗୀକୁ ଅଳ୍ପ ଅଳ୍ପ ପରିମାଣରେ ଦୁଧ ପଥ୍ୟଭାବରେ ଦେବା ଆବଶ୍ୟକ । ଲଘୁ ଖାଦ୍ୟ ଓ ଅଳ୍ପ ଅଳ୍ପ ପରିମାଣରେ ଖାଇବାକୁ ଦେବାଦ୍ୱାରା ରୋଗୀର ବାନ୍ତି କମିଯାଏ । ଏହି ଅବସ୍ଥାର ପ୍ରତିକାର ପାଇଁ ଡାନ୍‌କିନ୍ ହେଉଛି ପ୍ରକୃଷ୍ଟ ଔଷଧ । ଏହା କଫଶାମକ ଓ କଫ ନିଃସାରକ ଭାବେ କାର୍ଯ୍ୟ କରିଥାଏ ।

ଶ୍ୱାସ କଷ୍ଟର ପ୍ରଖର ଅବସ୍ଥାରେ ଭାଇଟାଲ ଏସେନସ ଦିଆଗଲେ ବିଶେଷ ଉପକାର ମିଳେ । ଛାତିରେ ଚେସଇ ମାଲିସ କରିବା ଦ୍ୱାରା ରୋଗ ଆକ୍ରମଣର ତୀବ୍ରତା କମାଇଦିଏ । ଶ୍ୱାସକୃଚ୍ଛ୍ରତା ସମୟରେ ଡେସିଲ ମଧ୍ୟ ଦିଆଯାଇପାରେ ।

ମଧୁମେହ (ଡ଼ାଇବେଟିସ୍)—

ଏହି ରୋଗ ରୋଗୀର ଅଗ୍ନ୍ୟାଶୟର ବିକୃତିଯୋଗୁ ହୋଇଥାଏ । ଅଗ୍ନ୍ୟାଶୟର ବିକୃତି ହେତୁ ଶ୍ୱେତସାର, ଛେନାଜାତୀୟ ଓ ଚର୍ବିଜାତୀୟ ଖାଦ୍ୟର ଚୟାପଚୟ

କାର୍ଯ୍ୟରେ ବାଧାଜନ୍ମେ । ଏହି ରୋଗର ପ୍ରାରମ୍ଭରେ ବିଶେଷ କ୍ଷୁଧା, ତୃଷା, ବିଶେଷତ ପରିସ୍ରା ହେବା ଦେଖାଯାଇଥାଏ । ଏହି ରୋଗୀର ମୂତ୍ର ଓ ରକ୍ତ ପରୀକ୍ଷା କଲେ ତହିଁରେ ଶର୍କରା ଅଂଶ ଥିବା ପରିଲକ୍ଷିତ ହୁଏ । ଏହି ରୋଗଟି ଶରୀରର ଚୟାପଚୟ ବିକୃତି ହେତୁ ଘଟିଥାଏ ଏବଂ ତଦ୍ୱାରା ପରିପାକକ୍ରିୟା ବିପର୍ଯ୍ୟସ୍ତ ହୋଇପଡ଼େ । ଏହି ରୋଗରେ ବିଶେଷ କ୍ଷୁଧା ହୁଏ । ରୋଗୀ ମଧ୍ୟ ଖାଇପାରେ, ମାତ୍ର ରୋଗୀ ଦିନପରଦିନ କ୍ଷଡ଼ିଯାଏ । ରୋଗୀର ମାଂସପେଶୀ ଶୀଥିଳ ହୋଇପଡ଼େ । ଅବସାଦ, ସାମୟିକ ମାନସିକ ଉତ୍ତେଜନା ଜନ୍ମେ । ରୋଗୀର ପାଟି, ଓଠ, ଚମଡ଼ା ଶୁଖିଲା ଦେଖାଯାଏ । ଏହିପରି ଅବସ୍ଥାରେ ରକ୍ତଚାପ ବଢ଼ିପାରେ, ଆଖିର ଦୋଷ ଘଟିପାରେ, ଦ୍ରୁତଭାବରେ କ୍ଷୟ ପ୍ରବଣତା ଦେଖାଯାଇପାରେ । ସମୟ ସମୟରେ ଏଥିପାଇଁ ସ୍ନାୟବିକ ଦୁର୍ବଳତା ମଧ୍ୟ ଦେଖାଯାଇପାରେ । ମଧୁମେହକୁ ସାଧାରଣତଃ ପଥ୍ୟ, ବ୍ୟାୟାମ ଓ ଔଷଧ ସାହାଯ୍ୟରେ ଚିକିତ୍ସା କରାଯାଇଥାଏ ।

ରୋଗୀର ଓଜନ ଓ ରୋଗର ଉଗ୍ରତା ଅନୁଯାୟୀ ପଥ୍ୟର ଶୃଂଖଳା କରିବାକୁ ପଡ଼ିଥାଏ । କାର୍ଯ୍ୟକ୍ଷମ ଲୋକଙ୍କ ପାଇଁ ଉପଯୁକ୍ତ ପରିମାଣରେ ଖାଦ୍ୟ ଖାଇବା ଆବଶ୍ୟକ । ମଧୁମେହ ରୋଗୀମାନଙ୍କ ପକ୍ଷରେ ନିୟମିତ ଓ ଶୃଂଖଳିତ ଚାଲିବା ହେଉଛି ସର୍ବଶ୍ରେଷ୍ଠ ବ୍ୟାୟାମ ।

ରୋଗୀ ପକ୍ଷରେ ସର ବା ଲହୁଣୀକଢ଼ା ଦୁଧ ବିନା ଚିନିରେ ଖାଇବା ସବୁଠାରୁ ଉତ୍ତମ ଖାଦ୍ୟ । ରୁଟି, ଅଳ୍ପ ପରିମାଣରେ ମାଂସ, ସାମାନ୍ୟ ପରିମାଣ ଭାତ ଖିଆଯାଇପାରେ । ବେଶୀଗୁଡ଼ାଏ ଭାତ ଖାଇବା, ଆଳୁ, କଦଳୀ, ପାଚିଲାଆମ୍ବ, ମୂଳ ପରିବା ଖାଇବା ନିଷେଧ । ରକ୍ତ ଓ ମୂତ୍ର ପରୀକ୍ଷାରେ ମୂତ୍ର ଓ ରକ୍ତ ସମ୍ପୂର୍ଣ୍ଣ ରୂପେ ଶର୍କରାରହିତ ନ ହେବା ପର୍ଯ୍ୟନ୍ତ ପଥ୍ୟାପଥ୍ୟ ଶୃଂଖଳା ଭିତରେ ରହିବା ଆବଶ୍ୟକ । କିଛି ଖଟା ଫଳରସ, ଗୋଟିଏ ଦୁଇଟା ମିଠାକମଳା ଖିଆଯାଇ ପାରେ । ମଧୁମେହ ପାଇଁ ମର୍ସିନା ହେଉଛି ଆମର ସୁନିର୍ବାଚିତ ଔଷଧ । ଚିକିତ୍ସାର ପ୍ରଥମ ସପ୍ତାହରେ ଦିନକୁ ଦୁଇଟାରୁ ଚାରିଟା ବଟିକା ଦିନକୁ ତିନି ଥର ଦିଆଯାଇ ପାରେ । ମୂତ୍ରରେ ଶର୍କରା ପରିମାଣ କମିଗଲେ ଦିନକୁ ୧ଟାରୁ ଦୁଇଟି ବଟିକା ଦିନକୁ ଦୁଇ ଥର ଦିଆଯାଇ ପାରେ । ମଝିରେ ମଝିରେ ରକ୍ତରେ ଶର୍କରା ପରିମାଣ ମଧ୍ୟ ପରୀକ୍ଷା କରି ଦେଖାଯିବା ଆବଶ୍ୟକ । ମାତ୍ର ରୋଗୀର ଅବସନ୍ନତା ଓ ମାନସିକ ଚଞ୍ଚଳତା, ସ୍ନାୟବିକ ଦୁର୍ବଳତା ଦୂର ହେବା ପାଇଁ ସମୟ ଅବଶ୍ୟକ । ଏଥିପାଇଁ ମରସିନା ସହିତ ଭାଇଟାଲ ଏସେନ୍ସ ପ୍ରୟୋଗ ଦ୍ୱାରା ବିଶେଷ ସୁଫଳ ମିଳିଥାଏ ।

ସାଧାରଣ ଓଜନ ହ୍ରାସ ଓ ପେଶୀ ଶୀଥିଳତା ପାଇଁ ଦିନକୁ ଥରେ ଦୁଇଥର ପ୍ରୟୋଗ କଲେ ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ବିଧାନ ଘଟିଥାଏ । ଛେନାଜାତୀୟ ଖାଦ୍ୟ ସାରର ଅଭାବଯୋଗୁଁ ଉପରୋକ୍ତ ଲକ୍ଷଣ ସମୂହ ଦେଖାଯାଇଥାଏ । ଏଣୁ ଯେଉଁ

ଖାଦ୍ୟରେ ଉଚ୍ଚହାରରେ ଛେନାଜାତୀୟ ଖାଦ୍ୟସାର ଥାଏ ତାହା ଆବଶ୍ୟକ ପରି-
ମାଣରେ ବ୍ୟବହାର କରିବାକୁ ପରାମର୍ଶ ଦେବା ଆବଶ୍ୟକ । ଏହା ବ୍ୟତୀତ ସୀମିତ
ବ୍ୟାୟାମ ମଧ୍ୟ ମଧୁମେହ ଚିକିତ୍ସାରେ ଏକାନ୍ତ ଆବଶ୍ୟକ ।

ଶୋଥ–

ଏହା ସାଧାରଣତଃ ଦୁଇ ପ୍ରକାର ଦେଖାଯାଇଥାଏ :

(୧) ଯେଉଁ ଶୋଥ ରୋଗରେ ଚ୍ଚପ ଦେଲେ ଦବେ ନାହିଁ ।

(୨) ଯେଉଁ ଶୋଥ ରୋଗରେ ଚ୍ଚପ ଦେଲେ ଦବି ଯାଏ ।

ଯେଉଁ ଶୋଥ ରୋଗରେ ଚ୍ଚପ ଦେଲେ, ଚ୍ଚପ ଦିଆଯାଇଥିବା ସ୍ଥାନ ଚପେ ନାହିଁ,
ସେହି ଶୋଥରୋଗ ସାଧାରଣତଃ ପରିଗ୍ରୀବା ଗ୍ରନ୍ଥି ରସ (Thyroyd defficiency) ର
ଅଭାବ ଯୋଗୁଁ ହୋଇଥାଏ ।

ହୃତ୍‌ପିଣ୍ଡର ରକ୍ତସଞ୍ଚାଳନ କ୍ରିୟା ବିଶୃଙ୍ଖଳା ହେତୁ ରୋଗୀର ପାଦ
ଦେଶରେ ଶୋଥ ଦେଖାଯାଏ । ବୃକ୍କ ଯନ୍ତ୍ରର ମୂତ୍ରପ୍ରଜନନ ପ୍ରକ୍ରିୟାର ବିଶୃଙ୍ଖଳା
ହେତୁ ମୁଖମଣ୍ଡଳରେ ଶୋଥ ଦେଖାଯାଇଥାଏ । ଯକୃତ ବିକାର ହେତୁ ପେଟରେ
ଜଳସଞ୍ଚୟ ଘଟି ଶୋଥ ଦେଖାଯାଇଥାଏ । ପୁଷ୍ଟିକାରିତାର ଅଭାବରେ ଯେଉଁ ଶୋଥ
ଜନ୍ମେ ହୃତ୍‌ପିଣ୍ଡର ରକ୍ତ ସଞ୍ଚାଳନ କ୍ରିୟା ବାଧାପ୍ରାପ୍ତ ହୋଇଥାଏ । ପୁଷ୍ଟିବିକାର ଜନିତ
ଶୋଥ ରୋଗର ପ୍ରାରମ୍ଭିକ ଅବସ୍ଥାରେ ଭିଟାମିନ୍ ବି ୧, ଛେନାଜାତୀୟ ଖାଦ୍ୟ ସଙ୍ଗେ
ଆଇବୋସାଙ୍ଗ ବ୍ୟବହାର କଲେ ଆଶୁଫଳ ମିଳିଥାଏ ।

ଯେଉଁ ସ୍ଥଳରେ ବୃକ୍କ ଯନ୍ତ୍ରର ବିକାର ଥାଏ, ସେ ସ୍ଥଳରେ ଟ୍ରାଇକୋ ପ୍ରୟୋଗ
କରାଯାଇ ପାରେ । କାଇନାଟୋମାଇନ ଯକୃତ୍ ବିକାର ସ୍ଥଳରେ ବିଶେଷ ହିତକର ।
ଯେଉଁ ସ୍ଥଳରେ ହୃତ୍‌ପିଣ୍ଡ ସମ୍ପୃକ୍ତ ସେ ସ୍ଥଳରେ ଗ୍ରାଣ୍ଡିକୋ ପ୍ରୟୋଗ କରିବା ବିଧେୟ ।
ଯେ କୌଣସି ଧରଣର ଶୋଥ ରୋଗରେ ସର୍ବଦା ଲୁଣ ବର୍ଜିତ ଖାଇବା ଖାଦ୍ୟ
ଆବଶ୍ୟକ ଏବଂ ଅମ୍ଳରସଯୁକ୍ତ ଫଳ ବ୍ୟବହାର କରିବା ହିତକାରକ । ସମ୍ପୂର୍ଣ୍ଣ ବିଶ୍ରାମ
ଓ ଉପରୋକ୍ତ ପଥ୍ୟ ଏବଂ ଚିକିତ୍ସାରେ ରହିଲେ ଶୀଘ୍ର ଆରୋଗ୍ୟ ଲାଭ ହୋଇଥାଏ ।

ଗ୍ରନ୍ଥୀ (ଗ୍ଲାଣ୍ଡ)–

ଲସିକା ଗ୍ରନ୍ଥିର ଅଭିବୃଦ୍ଧି;

(୧) ଏହି ଅବସ୍ଥାରେ ଗ୍ରନ୍ଥିଗୁଡ଼ିକର ସ୍ଫୀତି ଓ ବେଦନା ହୋଇଥାଏ ।

ଏହା ହେଉଛି ପ୍ରଦାହ ପ୍ରକ୍ରିୟା ଲକ୍ଷଣ ବିଶେଷ । ଏହି ରୋଗର ପ୍ରାରମ୍ଭିକ
ଅବସ୍ଥାରେ ଆଣ୍ଟିବାଇଓଟିକ୍ ଚିକିତ୍ସା କଲେ ବିଶେଷ ସୁଫଳ ମିଳିଥାଏ ।

(୨) କେତେକ ସ୍ଥଳରେ ଗ୍ରନ୍ଥିର ଅଭିବୃଦ୍ଧି ଘଟିଥାଏ, ମାତ୍ର ବୃଦ୍ଧି ସ୍ଥଳରେ
କୌଣସି ବେଦନା ନ ଥାଏ । ଏହି ଅବସ୍ଥାଟା ବହୁ ସ୍ଥଳରେ ଦେଖାଯାଏ । ଏହା
କ୍ୟାନସରଜନିତ ବା ଜୀବାଣୁ (ଭାଇରସ୍) ସଂକ୍ରମଣଯୋଗୁଁ ହୋଇପାରେ । ଏଣୁ

ଗ୍ରନ୍ଥିରୋଗର ନିର୍ଣ୍ଣୟ ଓ ଚିକିତ୍ସା କ୍ଷେତ୍ରରେ ଭେଦାତ୍ମକ ରୋଗ ନିର୍ଣ୍ଣୟ ପ୍ରଣାଳୀ ଦ୍ୱାରା ରୋଗ ନିର୍ଣ୍ଣୟ ହେଲେ ଏକ ଅଭ୍ରାନ୍ତ ସିଦ୍ଧାନ୍ତରେ ସହଜରେ ପହଞ୍ଚି ହୁଏ ।

ଯକ୍ଷ୍ମାଜନିତ ଗ୍ରନ୍ଥି ବୃଦ୍ଧି କ୍ଷେତ୍ରରେ ଯକ୍ଷ୍ମାବିରୋଧୀ ଚିକିତ୍ସା ବ୍ୟବସ୍ଥା କରିବା ଆବଶ୍ୟକ ।

ମୁକ୍ତ ଆଲୋକ, ବାୟୁ, ପୁଷ୍ଟିକର ଖାଦ୍ୟ, ଦୁଧ, ଫଳରସ, ସଙ୍ଗେ ଆଇବୋ-ସାଙ୍ଗର ପ୍ରୟୋଗ ବିଶେଷ ଫଳପ୍ରଦ ହୋଇଥାଏ । ଗ୍ରନ୍ଥିସ୍ଫୀତି ରୋଗଗୁଡ଼ିକ ଆଣ୍ଟିବାଇଓଟିକ୍ ଚିକିତ୍ସା ଦ୍ୱାରା ଶୀଘ୍ର ଆରୋଗ୍ୟ ହୋଇଥାଏ । ଏପରି ଅବସ୍ଥାରେ ଶଲ୍ୟପୋଗ୍ଚରର କୌଣସି ଆବଶ୍ୟକତା ନ ଥାଏ । ଯେଉଁ ସ୍ଥଳରେ ଗ୍ରନ୍ଥିଗୁଡ଼ିକ ପାଚିଯାଏ ସେଠାରେ ଶଲ୍ୟକ୍ରିୟାର ପ୍ରୟୋଜନ ପଡ଼େ ।

କ୍ଷତର ପରିପୂରଣ ଆଶାନୁରୂପ ହେଉ ନ ଥିଲେ ହିଲନ୍ ପାଉଡ଼ର କ୍ଷତ ଉପରେ ବିଞ୍ଚି ଦେବାକୁ ହେବ । ସଲଫାସିନ୍ ଏବଂ ହର୍ମୋପାଇରିନ୍‌ର ବ୍ୟବହାର ଗ୍ରନ୍ଥି ଅଭିବୃଦ୍ଧି ସ୍ଥଳରେ ଉତ୍ତମ ଫଳ ଦେଖାଇଥାଏ । ଯାବତୀୟ ପୁରାତନ ଅବସ୍ଥାରେ ଆଇବୋସାଙ୍ଗ ଦୁଧ ବା ଫଳରସ ସହିତ ବ୍ୟବହାର୍ଯ୍ୟ ।

ଚର୍ମରୋଗ—

ଏହା ନୂଆ ବା ପୁରୁଣା ହୋଇପାରେ । ଯେଉଁଠାରେ ରୋଗଟା ସଦ୍ୟ ସଂକ୍ରମଣ ହେତୁ ହୋଇଥାଏ ସେ ସ୍ଥଳରେ ଜୀବାଣୁନାଶକ ବାହ୍ୟ ପ୍ରୟୋଗ ଯଥା—ଆକ୍ରାନ୍ତ ସ୍ଥାନକୁ ସଫା କରିବା, ଆବଶ୍ୟକସ୍ଥଳେ ପ୍ରଲେପ, ମଲମ ଲଗାଇବା ଦରକାର ପଡ଼ିପାରେ । ଚର୍ମରୋଗଟି ପୁରାତନ ହୋଇଥିଲେ ଔଷଧ ଖାଇ ଶରୀରର ରସରକ୍ତାଦି ଧାତୁକୁ ନିର୍ଦ୍ଦୋଷ କରାଇବା ଆବଶ୍ୟକ ପଡ଼େ । ଆଇଓବିନ୍ ରକ୍ତ ସଫା କରିବାରେ ବିଶେଷ ଫଳପ୍ରଦ । ଏଥି ସଙ୍ଗେ ଆଇବୋସାଙ୍ଗ ବ୍ୟବହାର କଲେ ନୂତନ ଓ ବିଶୁଦ୍ଧ ରକ୍ତ ଉତ୍ପାଦନରେ ସାହାଯ୍ୟ କରେ । ଚର୍ମରୋଗ ହେବା ପରେ ଚର୍ମର କର୍କଶତା ଓ ଦାଗ ପ୍ରଭୃତି ଦୋଷ ରହିଯାଏ । ତାହା ରିପାଣ୍ଡୋ ବ୍ୟବହାର କରିବା ଦ୍ୱାରା ଦୂର ହୋଇ ଯାଇଥାଏ । ନୂତନ ଅନୁଶୀଳନ ଓ ପରୀକ୍ଷା ଦ୍ୱାରା ଜଣାଯାଇଛି, ଆଇଓବିନ୍ ଇଞ୍ଜେକସନ ଚମଡ଼ା ତଳେ ଦେବା ଦ୍ୱାରା ଚର୍ମରୋଗ ଆଶାତୀତ ସ୍ୱଳ୍ପ ସମୟ ମଧ୍ୟରେ ଭଲ ହୋଇଯାଉଅଛି ।

କୁଣ୍ଡିଆ ଗୋଟିଏ ସାଧାରଣ ଚର୍ମରୋଗ ଏବଂ ଏହା ଜଣକଠାରୁ ଅନ୍ୟ ଜଣକୁ ଡେଇଁଥାଏ । କୁଣ୍ଡିଆ ରୋଗ ହେଲେ ଆକ୍ରାନ୍ତ ସ୍ଥାନ ବିଶେଷ କୁଣ୍ଡେଇ ହୁଏ, ସ୍ଥଳବିଶେଷରେ ଫୁଲିଯାଏ ଓ କ୍ଷତ ହୁଏ । ଏହି ରୋଗର ଚିକିତ୍ସା ସମୟରେ ସାଧାରଣ ପରିଷ୍କାର ପରିଚ୍ଛନ୍ନତା ପ୍ରତି ଧ୍ୟାନ ଦେବା ପ୍ରଥମ ଓ ପ୍ରଧାନ କାର୍ଯ୍ୟ । ଏହା ବ୍ୟତୀତ ଆକ୍ରାନ୍ତ ସ୍ଥାନ ଉପରେ ଆବଶ୍ୟକସ୍ଥଳେ ପଟି ବାନ୍ଧିବାକୁ ପଡ଼ିପାରେ, ରୋଗୀର ବିଛଣା ଗୁଦଡ଼ିକୁ ବଦଳାଇବା ଦରକାର ହୋଇଥାଏ । ଚର୍ମରୋଗର ପୁନରାକ୍ରମଣରୁ

ରକ୍ଷା ପାଇବାକୁ ହେଲେ ପରିଷ୍କାର ପରିଚ୍ଛନ୍ନତା ପ୍ରତି ଧ୍ୟାନ ଦେବାକୁ ହୁଏ । ଯେଉଁସବୁ ସାବୁନରେ ଉତ୍ତେଜକ ଦ୍ରବ୍ୟଥାଏ ତାହା ବ୍ୟବହାର କରିବା ନିଷିଦ୍ଧ ।

ହାର୍ବୋସଲ୍ଫ ରିପାଣ୍ଡୋ ସହିତ ଏକ ଭାଗରେ ଦଶ ଭାଗ ମିଶାଇ ଶୋଇବା ପୂର୍ବରୁ ଆକ୍ରାନ୍ତ ସ୍ଥାନରେ ଲଗାଇବାକୁ ହେବ । ତା ପରଦିନ ସକାଳୁ ଭଲ କରି ଧୋଇ-ଦେବାକୁ ପଡ଼େ । ଏହାଦ୍ୱାରା ବିଶେଷ ସୁଫଳ ମିଳିଥାଏ ।

ଯାଦୁ–

ଏହା ଏପରି ଏକ ରୋଗ, ଯାହା କି ଶରୀରର ଯେକୌଣସି ଅଂଶରେ ହୋଇପାରେ । ଏହା ଗୋଟିଏ ସ୍ଥାନରୁ ଆରମ୍ଭ ହୁଏ ଏବଂ ଧୀରେ ଧୀରେ ବଢ଼ି ଗୋଲ-ଆକାରଧାରଣ କରେ । ଏହା ମଧ୍ୟ ମୁଣ୍ଡର ବାଳତଳ ଚମଡ଼ା ଉପରେ ହୋଇପାରେ, କେବଳ ୟିନ୍‌ମେଣ୍ଟ ବ୍ୟବହାର କରିବା ଦ୍ୱାରା ଏହା ଭଲ ହୋଇଥାଏ । ପ୍ରତିଦିନ ସକାଳୁ ଔଷଧ ଲଗାଇବା ସ୍ଥାନକୁ ଉତ୍ତମ ରୂପେ ସଫା କରିବାକୁ ପଡ଼େ ।

ବିଚର୍ଚ୍ଚିକା (ସୋରିଆସିସ)–

ଏହା ଏକ ଦୀର୍ଘସ୍ଥାୟୀ ଚର୍ମରୋଗ । ଏହା ଶରୀରର ଯେ କୌଣସି ସ୍ଥାନରେ ହୋଇ ପାରେ ।

ପାମା (ଏକଜିମା)–

ଏହା ଏକ ଚିରକାରୀ ଚର୍ମରୋଗ । ଏହା ମଧ୍ୟମଧ୍ୟ ହୋଇ ଉଠେ । ଏହି ରୋଗକୁ ଚିକିତ୍ସା କରିବାକୁ ହେଲେ ଆଭ୍ୟନ୍ତର ପ୍ରୟୋଗ ପାଇଁ ଆଗଓବିନ୍ ଓ ବାହ୍ୟ ପ୍ରୟୋଗ ପାଇଁ ରିପାଣ୍ଡୋ ପ୍ରୟୋଗ କରିବାକୁ ହେବ । ରିପାଣ୍ଡୋକୁ ଆକ୍ରାନ୍ତ ସ୍ଥାନରେ ଧୀରେ ଧୀରେ ମାଲିସ କରିବାକୁ ହେବ । ଏ ସ୍ଥଳରେ ଆଭ୍ୟନ୍ତର ପ୍ରୟୋଗ ପାଇଁ ହାର୍ବୋସଲଫ ବା ଏକ ଭାଗ ହାର୍ବୋସଲଫ୍ ସହିତ ପାଞ୍ଚ ଭାଗ ରିପାଣ୍ଡୋ ମିଶାଇ ବ୍ୟବହାର କଲେ ଉତ୍ତମ ଫଳ ମିଳେ । ଖାଇବା ତେଲ ବା ଘିଅ ସହିତ ହିଙ୍ଗୁଳ ମିଶାଇ ସକାଳେ ବା ବିଛଣାକୁ ଯିବା ସମୟରେ ଲଗାଇଲେ ଏକ୍‌ଜିମାର ଜ୍ୱାଳା ଯନ୍ତ୍ରଣା କମିଯାଏ । ଏହିପରି ଅବସ୍ଥାରେ ୟିନ୍‌ମେଣ୍ଟ ବ୍ୟବହାର କଲେ ମଧ୍ୟ ସୁଫଳ ମିଳେ । ଯାବତୀୟ ପୁରୁଣା ଚର୍ମରୋଗରେ ପ୍ରଚୁର ପରିମାଣରେ ଛେନାଜାତୀୟ ଖାଦ୍ୟ, ଖଟାରସଯୁକ୍ତ ଫଳ, ଭିଟାମିନ ସି, ଏବଂ ଆଲବୋସାଙ୍ଗ ବ୍ୟବହାର କଲେ ରୋଗର ଦୋଷ ଶରୀର ଭିତରୁ ସମ୍ପୂର୍ଣ୍ଣ ରୂପେ ଦୂର ହୋଇଥାଏ ।

ଶୀତପିତ୍ତ–

ଏହି ରୋଗ ଏକ ପ୍ରକାର ତୀବ୍ର ଗ୍ରାହକତା ( Hypersensitivity ) ଗୁଣ ହେତୁ ଦେହର ଚର୍ମ ଉପରେ କୁଣ୍ଡେଇ କୁଣ୍ଡେଇ ହୋଇ ଫଳି ଫଳି ଯାଏ । ଏହି କୁଣ୍ଡେଇ ହେବା ଓ ଫଳିଯିବା ଲକ୍ଷଣ ଅଳ୍ପ ସମୟ ମଧ୍ୟରେ ଉଭେଇଯାଏ । କୌଣସି କୌଣସି ସ୍ଥଳରେ ବାରମ୍ବାର ହୁଏ । ଏହା ଏକ ପ୍ରକାର ଆଲର୍ଜିକ ପ୍ରତିକ୍ରିୟା

ହୋଇପାରେ । ସାଧାରଣତଃ କେତେକଙ୍କ ପକ୍ଷରେ ଖୋଳଥିବା ମାଛ, (ଯେଥା—ଚିଙ୍ଗୁଡ଼ି, କଙ୍କଡ଼ା) ଅଣ୍ଡା, କେତେକ ଔଷଧ, କେତେକ ଗନ୍ଧ, କେତେକ ମାନସିକ ଉତ୍ତେଜନାର ବସ୍ତୁ ବା ପରଜୀବୀ ସଂକ୍ରମଣ ହେତୁ ଏହି ଲକ୍ଷଣ ପ୍ରକାଶ ପାଉଥାଏ । ଯେଉଁମାନଙ୍କ ଠାରେ ଏହି ରୋଗର ଆକ୍ରମଣ ଘନ ଘନ ହୁଏ, ସେ ସ୍ଥଳରେ ଉପରୋକ୍ତ କାରଣ ମଧ୍ୟରୁ କେଉଁଟି ମୂଳକାରଣ ତାହା ଖୋଜି ବାହାର କରିବାକୁ ହେବ । କାରଣଟି ଜଣା ପଡ଼ିଲେ, ରୋଗୀକୁ ଉକ୍ତ କାରଣଠାରୁ ଦୂରରେ ରଖିଲେ ରୋଗ ଆକ୍ରମଣର ସମ୍ଭାବନା ରହେ ନାହିଁ । ଏହି ରୋଗର ସାଧାରଣ ଚିକିତ୍ସା ହେଉଛି, ରୋଗୀର ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ବିଧାନ କରିବା । ମାନସିକ ବିକ୍ଷିପ୍ତି ଓ ମାନସିକ ଅବସାଦ ଯେପରି ନ ଘଟେ ତାହା ମଧ୍ୟ ଦେଖିବାର କଥା । କାଇନୋଟୋମିନ୍ ବଟିକା ତିନିଟାରୁ ଗ୍ୱରିଟା ପ୍ରତିଦିନ ଖାଇଲେ ବିଶେଷ ଉପକାର ମିଳେ । ହିମୋପ୍ଲେକ୍ସ ଗୋଟିଏ ବଟିକା ମହୁ ବା ଗରମପାଣି ସହିତ ବିଶେଷ ଫଳ ଦେଖାଇଥାଏ । ଏ ସ୍ଥଳରେ ରୋଗୀର କୋଷ୍ଠ କାଠିନ୍ୟ ଥିଲେ ହୋଇକ୍ସ ବ୍ୟବହାର କରି କୋଷ୍ଠଶୁଦ୍ଧି କରାଇବା ଆବଶ୍ୟକ । ରୋଗୀର କ୍ଷୁଧା ଓ ମଳଶୁଦ୍ଧି କିପରି ହେଉଛି, ସେଥିପ୍ରତି ଯଥାର୍ଥ ଧ୍ୟାନ ଦେବା ପ୍ରୟୋଜନ । ଏହି ଅବସ୍ଥାରେ ଆଇବୋସାଗ ମଧ୍ୟ ବ୍ୟବହାରରେ ଉତ୍ତମ ଫଳ ଦର୍ଶାଇଥାଏ ।

କ୍ଷତ ଓ କଟାଘା'—

ଏପରି ସ୍ଥଳରେ ଯଥାଶୀଘ୍ର ଜୀବାଣୁନାଶକ ବ୍ୟବସ୍ଥା ଆବଶ୍ୟକ । ଏଥିପାଇଁ ରିପାଣ୍ଡୋ ବ୍ୟବହାର କରାଯାଇ ପାରେ । ଯଦି ପୂଜପାଣି ହୋଇ ଯାଇଥାଏ, ତାହାହେଲେ କ୍ଷତସ୍ଥାନକୁ ଜୀବାଣୁନାଶକ ଔଷଧ ଦ୍ୱାରା ଧୋଇ, କ୍ଷତ ସ୍ଥାନରେ ହାର୍ବୋସଇଫା ବଟିକା ଗୁଣ୍ଡ କରି ବ୍ୟବହାର କରାଯାଇ ପାରେ । ଯଦି ରୋଗୀର ଜ୍ୱରଥାଏ, ସେ ସ୍ଥଳରେ ସଲଫାର୍ସିନ୍ ଇଞ୍ଜେକସନ ଦେବା ଆବଶ୍ୟକ । ଯଦି କ୍ଷତ ସ୍ଥାନରୁ ପୂଜ ବାହାରୁଥାଏ, ସେ ସ୍ଥଳରେ ହିଲନ୍ ପାଉଡ଼ର ପ୍ରୟୋଗ କରିବା ଆବଶ୍ୟକ । ସମସ୍ତ ପୂଜ ବିଶମୟତାସ୍ଥଳରେ ହିମୋପ୍ଲେକ୍ସ ଗୋଟିଏ ଲେଖାଏଁ ବଟିକା ଦିନକୁ ତିନିଥର ବ୍ୟବହାର କରାଯାଇପାରେ ।

ଅଦ୍ଧାଙ୍ଗୁଳି—

ଏହା ବୁଢ଼ା ଆଙ୍ଗୁଳିରେ ହେଉଥିବା ଏକ ଉଗ୍ର ପ୍ରଦାହଜନିତ ରୋଗ । ରୋଗର ଯନ୍ତ୍ରଣା ସାମାନ୍ୟ ଥିଲେ ଏକମାତ୍ର ସଲଫାସିନ୍ ଇଞ୍ଜେକସନ ଅଧଃତ୍ୱଗ୍‌ରେ ଦେଲେ ଯଥେଷ୍ଟ । ଯଦି ଯନ୍ତ୍ରଣା ଖୁବ୍ ଉଗ୍ର ଓ ଯନ୍ତ୍ରଣାଦାୟକ ତାହାହେଲେ ସେ ସ୍ଥଳରେ ଶଲ୍ୟକ୍ରିୟା ସାହାଯ୍ୟ ନେବା ଆବଶ୍ୟକ । ଏହିପରି ଅବସ୍ଥାରେ ଘାଟା ଫଳରସ ଯଥେଷ୍ଟ ପରିମାଣରେ ବ୍ୟବହାର କଲେ ଉତ୍ତମ ଫଳ ମିଳିଥାଏ ।

ଫକ୍‌କରୋଗ (ଅସ୍ଥି-କୋମଳତା)–

ଏହା ଶରୀରରେ ଭିଟାମିନ୍ 'ଡି'ର ଅଭାବ ତଥା ଚୟାପଚୟ କ୍ରିୟାର ବିଶୃଂଖଳା ଯୋଗୁଁ ଜନିଥାଏ । ଏହି ରୋଗ ସାଧାରଣତଃ ବର୍ଦ୍ଧିଷ୍ଣୁ ଶିଶୁମାନଙ୍କଠାରେ ଦେଖାଯାଇଥାଏ । ଏହି ରୋଗ ସାଧାରଣତଃ ମା'ମାନଙ୍କର ଗର୍ଭାବସ୍ଥାରେ ଓ ସ୍ତନ୍ୟଦାନ କରିବା ଅବସ୍ଥାରେ ପୁଷ୍ଟିକାରକ ଖାଦ୍ୟ ଅଭାବଯୋଗୁଁ ହୋଇଥାଏ । ସନ୍ତସନ୍ତିଆ ଓ ଅନ୍ଧାରିଆ ସ୍ଥାନରେ ରହିବା ମଧ୍ୟ ଏହି ରୋଗର ଅନ୍ୟତମ କାରଣ ।

ଏହି ରୋଗର ପ୍ରାଥମିକ ଲକ୍ଷଣ ହେଉଛି, ରୋଗଗ୍ରସ୍ତ ପିଲାଗୁଡ଼ିକ ଅସ୍ତବ୍ୟସ୍ତ ହୁଅନ୍ତି, ଚିଡ଼ିଚିଡ଼ା ହୋଇଯାନ୍ତି ଏବଂ ସେମାନଙ୍କର କପାଳରୁ ପ୍ରଚୁର ଝାଳ ବାହାରେ । ଏହି ରୋଗରେ ପ୍ରଥମେ ଅସ୍ଥିଗତ ବିକୃତି ଦେଖାଦିଏ । ସେମାନଙ୍କର ହାଡ଼ର ମୁଣ୍ଡ ଅପେକ୍ଷାକୃତ ମୋଟା ହୋଇଯାଏ । ଦାନ୍ତ ଉଠିବାରେ ଡେରିହୁଏ । ପେଟ ବାହାରକୁ ବାହାରି ପଡ଼େ । ଗୋଡ଼ ବଙ୍କା ଦେଖାଯାଏ । ଗଣ୍ଠି ଅଚଳ ହୁଏ । ପିଲା ଚାଲିବାରେ ଡେରି ହୁଏ । ଏ ସବୁ ରୋଗ ବିଶେଷତଃ ଯେଉଁ ଶିଶୁ ଅପ୍ରାକୃତିକ ଖାଦ୍ୟ ଉପରେ ନିର୍ଭର କରେ, ସେମାନଙ୍କୁ ବିଶେଷ ଭାବରେ ହୋଇଥାଏ । ଏଣୁ ଏହି ରୋଗ ପାଇଁ ପ୍ରତିଷେଧକ ଓ ରୋଗ ନାଶକ ଚିକିତ୍ସା ବ୍ୟବସ୍ଥା ଆବଶ୍ୟକ । ଆଲବୋସାଙ୍ଗରେ କ୍ୟାଲସିୟମ୍ ପ୍ରଚୁର ପରିମାଣରେ ଥିବାରୁ ତାହା ଏ ଅବସ୍ଥାରେ ବିଶେଷ ଉପଯୋଗୀ । ଏହାକୁ ଦିନକୁ ଦୁଇଥର ଦୁଧ ସହିତ ଦେବା ଆବଶ୍ୟକ । ପିଲା ଯେପରି ମାତୃସ୍ତନ୍ୟ ପାଏ ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ । କିନ୍ତୁ ଏପରି ସ୍ଥଳେ ସ୍ତନ୍ୟଦାୟିନୀ ମା ପୁଷ୍ଟିକର ଖାଦ୍ୟ ବିଶେଷତଃ କ୍ୟାଲସିୟମ୍ ପ୍ରଧାନ ଖାଦ୍ୟ ଖାଇବା ଆବଶ୍ୟକ ।

ଯୌନ ଅକ୍ଷମତା ଓ ଧ୍ୱଜଭଙ୍ଗ–

ସ୍ୱଭାବ ସୁଲଭ ଭାବରେ ପ୍ରତ୍ୟେକର ଯୌନ ଆକାଂକ୍ଷା ରହିବା ଆବଶ୍ୟକ ଏବଂ ପରିମିତ ପରିମାଣରେ ଏହାର ଉପଭୋଗ ପ୍ରତ୍ୟେକଙ୍କ ପାଇଁ ଆବଶ୍ୟକ ଅଧିକନ୍ତୁ କୌଣସି କ୍ଷତିକାରକ ନୁହେଁ । ଯଥେଷ୍ଟ ଯୌନାଗ୍ରହ ଦ୍ୱାରା ପୁରୁଷର ଧ୍ୱଜଭଙ୍ଗ, ସାୟବିକ ଦୁର୍ବଳତା ପ୍ରଭୃତି ସ୍ନାୟବିକ ପ୍ରକ୍ରିୟାର ନାନା ବିଶୃଂଖଳା ଦେଖା ଦେଇଥାଏ ।

ଯୌନ ଅକ୍ଷମତା ଅନେକ ସମୟରେ ଶାରୀରିକ ଦୁର୍ବଳତା, ସ୍ନାୟବିକ ଦୁର୍ବଳତା, ମାନସିକ ଅଶାନ୍ତି, ଅନ୍ୟ କୌଣସି ରୋଗର ସଂକ୍ରମଣ ବା ଶାରୀରିକ ବା ମାନସିକ ବିକାରର ପରିଣତି ଭାବରେ ଦେଖାଦେଇଥାଏ ।

ଅନେକ ସ୍ଥଳରେ ଏହି ରୋଗର କାରଣ ଅଜୀର୍ଣ୍ଣ, ଅଗ୍ନିମାନ୍ଦ୍ୟ, ଯକୃତ୍ ବିକାର, ଗନୋରିୟା, ସିଫିଲିସ୍ ପରି ଯୌନରୋଗ ମଧ୍ୟ ହୋଇପାରେ ।

ରୋଗୀ ରୋଗର ଇତିବୃତ୍ତକୁ ସାବଧାନ ଓ ସହାନୁଭୂତିସହ ଶୁଣିଲେ ଓ ଜାଣିଲେ ରୋଗର ମୂଳକାରଣ ସହଜରେ ଧରି ହୁଏ । ଯୌନ କ୍ଷମତା ପାଇଁ

ପୁଷ୍ଟିକର ଖାଦ୍ୟ ସର୍ବାଦୌ ପ୍ରୟୋଜନ । ଏହି ରୋଗର କୌଣସି ଚିକିତ୍ସା କରିବା ପୂର୍ବରୁ ସର୍ବାଦୌ ରୋଗୀର ପରିପାକ କ୍ରିୟାକୁ ଠିକ୍ କରିବାକୁ ହେବ । ଏହିପରି ଅବସ୍ଥାରେ ରୋଗୀକୁ ନିୟମିତ ବ୍ୟାୟାମ ଓ ବିବାହିତ ଜୀବନର ସୀମିତ ପରିସର ମଧ୍ୟରେ ଯୌନାଗ୍ରହକୁ ସୀମିତ ରଖିବାକୁ ହେବ । ସେନ୍‌ଜିନ୍ ଏପରି ସ୍ଥଳରେ ପ୍ରୟୋଗ କଲେ ମୃଦୁ ଯୌନ ଉତ୍ତେଜନା ସୃଷ୍ଟି କରିଥାଏ । ଏହି ବଟିକାରୁ ଥରକୁ ଦୁଇଟି ମାତ୍ରାରେ ଦିନକୁ ତିନିଥର ସେବନ କରିବା ଆବଶ୍ୟକ । ଯେଉଁ ସ୍ଥଳରେ ସ୍ନାୟବିକ ଶ୍ରାନ୍ତି ଏହି ରୋଗର ମୂଳକାରଣ, ସେ ସ୍ଥଳରେ ଭାଇଟାଲ ଏସେନ୍‌ସ ପ୍ରୟୋଗ କଲେ ସୁଫଳ ମିଳିଥାଏ । ଏହିପରି ଅବସ୍ଥାରେ ଆଲବୋସାଙ୍ଗ ସକାଳେ ଓ ସନ୍ଧ୍ୟାରେ ଦୁଧ ସଙ୍ଗରେ ପ୍ରୟୋଗ କରିବା ଆବଶ୍ୟକ ।

ସ୍ୱପ୍ନଦୋଷ–

ଅନେକ ଲୋକ ଏଥିପାଇଁ ଅକାରଣରେ ବ୍ୟସ୍ତ ବିବ୍ରତ ହୋଇଥାନ୍ତି । ଯଦି ଜଣେ ଯୁବକର ସପ୍ତାହରେ ଥରେ ସ୍ୱପ୍ନଦୋଷ ହୁଏ, ତାହା ହେଲେ ତାହା ବିଶେଷ କ୍ଷତିକାରକ ନୁହେଁ । ମାତ୍ର ଯେଉଁମାନେ ଦୀର୍ଘଦିନ ଧରି ହସ୍ତମୈଥୁନରେ ଲିପ୍ତ ହୋଇ ପଡ଼ିଥାନ୍ତି ଏବଂ ଯେଉଁମାନଙ୍କର ସାଧାରଣ ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଥାଏ, ସେମାନଙ୍କ ପକ୍ଷରେ ସ୍ୱପ୍ନଦୋଷ ଏକ ବିଶେଷ ସମସ୍ୟା ସୃଷ୍ଟି କରିଥାଏ । କିନ୍ତୁ କୌଣସି କ୍ଷେତ୍ରରେ ଏଥିପାଇଁ ବ୍ୟସ୍ତ ବ୍ୟାକୁଳ ହେବା ଅନୁଚିତ ।

ଯାହାହେଉ ଏହା କେତେକ ସରଳ ଉପଚାରଦ୍ୱାରା ଦୂର କରାଯାଇପାରିବ । ପ୍ରତିଦିନ ଘୋଳଦହି, ନେମ୍ବୁ ସରବତ୍ ଓ ଖଟାଫଳ ରସ ଖାଇବା ଏବଂ କିଛି ଦିନ ପାଇଁ ନିରାମିଷ ଖାଦ୍ୟ ଉପରେ ନିର୍ଭର କରି ଚଳିବାଦ୍ୱାରା ଏହି ଦୋଷ ଦୂର ହୋଇ-ଥାଏ । ଏହି ଅବସ୍ଥାରେ ସର୍ବତୋଭାବରେ ମଦ୍ୟପାନ ନିଷିଦ୍ଧ ରଖିବାକୁ ହେବ । ସକାଳେ ଓ ସନ୍ଧ୍ୟାରେ ଆଲବୋସାଙ୍ଗ ଦୁଧ ସହ ଓ ନର୍ଭୋସ ୧-୨ଟି ବଟିକା ଶୋଇବା ସମୟରେ ବ୍ୟବହାର କଲେ ଆଶୁ ଫଳ ଦେଖାଇଥାଏ । ଏହି ଅବସ୍ଥାରେ କୋଷ୍ଠ-ବଦ୍ଧତା ଦେଖାଦେଲେ ତାର ବିହିତ ପ୍ରତିକାର କରିବା ଆବଶ୍ୟକ ।

ଫସ୍‌ଫେଟ ମେହ–

ଯେଉଁମାନଙ୍କ ମୂତ୍ରରେ ବହୁ ପରିମାଣରେ ଫସ୍‌ଫେଟ ଯାଏ ସେମାନଙ୍କ ପକ୍ଷରେ ଭାଇଟାଲ ଏସେନ୍‌ସ ଦିନକୁ ଦୁଇଥର ଓ ରାତ୍ରିରେ ଶୋଇବା ପୂର୍ବରୁ ଦୁଇଟି ନର୍ଭୋସ୍ ବଟିକା ଖାଇଲେ ବିଶେଷ ସୁଫଳ ମିଳେ । ଉଭୟ ଔଷଧକୁ ଏକତ୍ର ଦିନକୁ ତିନିଥର ସେବନ କରାଯାଇପାରେ ।

ଶୁକ୍ରମେହ–

ଅନେକ ସମୟରେ ଫସ୍‌ଫେଟ ମେହ ଲୋକଙ୍କୁ ଶୁକ୍ର ମେହର ଭ୍ରମ ଧାରଣା ଦେଇଥାଏ । ଘୋଳଦହି ଓ ଫଳ ଖାଇଲେ ଫସ୍‌ଫେଟ ମେହ ଭଲ ହୋଇଥାଏ ।

ଥରବୋସାଙ୍ଗ ଦିନକୁ ଦୁଇଥର ଖାଇଲେ ଉତ୍ତମ ଫଳ ଦେଖାଇଥାଏ । ଧ୍ୱଜଭଙ୍ଗ ସହିତ ଶୁକ୍ର ମେହ ଥିଲେ ସେନଙ୍ଗିନ୍ ଅଳ୍ପମାତ୍ରାରେ ପ୍ରୟୋଗ କଲେ ଯଥେଷ୍ଟ ଉପକାର ଦେଖାଇଥାଏ ।

ଶ୍ୱାସ–

ଶ୍ୱସନିକା ପ୍ରଦାହଜନିତ ଶ୍ୱାସ ରୋଗରେ ଶ୍ୱାସ ନଳୀରେ ସଁ ସଁ ଶବ୍ଦ ସହିତ ଶ୍ୱାସ ଉତ୍କ୍ଷରଣ ଦେଖାଦେଇଥାଏ । ଏହି ରୋଗରେ ଶ୍ୱାସନଳୀର ସଂକୋଚ ହେତୁ ଶ୍ୱାସ ଛାଡ଼ିବାରେ କଷ୍ଟ ହୁଏ । ଏହି ରୋଗ ନିମ୍ନଲିଖିତ କାରଣ ଯୋଗୁଁ ହୋଇଥାଏ ।

(୧) ଆଲର୍ଜିକ୍ କାରଣ–(ଅସାତ୍ମ୍ୟ ସଂଯୋଗଜ ବିଷକ୍ରିୟା)

(୨) ଚିନ୍ତା ଶୋକ ଆଦି ମାନସିକ ଘାତ ପ୍ରତିଘାତ ।

(୩) ଶ୍ୱାସନଳୀରେ କୌଣସି ଜୀବାଣୁ, ଭୂତାଣୁର ସଂକ୍ରମଣକୁ ଆଣ୍ଟିବାଇଓଟିକ୍ ଔଷଧ ପ୍ରୟୋଗଦ୍ୱାରା ସଂକ୍ରମଣ କ୍ରିୟା ନିରୋଧ କରିଯାଇ ପାରେ ।

ଶ୍ୱାସ କଷ୍ଟ ହେବାରେ ଦୁଇଟି କାରଣ ଥାଏ ଯଥା—ଶ୍ୱାସନଳୀର ସଂକୋଚନ ଜନିତ ସ୍ତବ୍ଧତା, କିମ୍ବା ଶ୍ୱାସନଳୀରୁ ଜନ୍ମହେଉଥିବା କଫର ଉତ୍କ୍ଷରଣ । ଶ୍ୱାସ ରୋଗ ତାତ୍କାଳିକ ହୋଇପାରେ ବା ଚିରକାଳୀ ହୋଇପାରେ, ସାଧାରଣତଃ ଏହି ରୋଗ ଶ୍ୱାସ ପ୍ରଣାଳୀ ଆକ୍ରାନ୍ତ ହୋଇଥାଏ ।

ସାଧାରଣତଃ ଶ୍ୱାସର ଆକ୍ରମଣ ହଠାତ୍ ରାତିରେ ଉଠେ, ରୋଗୀ ବିଛଣାରୁ ଉଠିପଡ଼େ । ଇତସ୍ତତଃ ଝରକା କବାଟ ଖୋଲିଦିଏ, କିପରି ପବନ ପାଇବ ଏହି ଆଶାରେ । ସମୟ ସମୟରେ ଶ୍ୱାସନଳୀସଙ୍ଗେ ହୃତ୍ପିଣ୍ଡ ମଧ୍ୟ ସମ୍ପୃକ୍ତ ହୋଇଥାଏ । ସେ ଅବସ୍ଥାକୁ ହୃତ୍ପିଣ୍ଡୀୟ ଶ୍ୱାସ କୁହାଯାଏ । ରକ୍ତଚାପ ଆଧିକ୍ୟ ବା ଅନ୍ୟ ସେହିପରି କେତେକ କାରଣରୁ ହୋଇଥାଏ ।

ଶ୍ୱାସନଳିକା ଆକ୍ରାନ୍ତ ଶ୍ୱାସ ରୋଗରେ ଦୀର୍ଘ ଶ୍ୱାସ ହୁଏ । ଏହା ଅନେକ ସମୟରେ ଶ୍ୱସନିକାର ସ୍ତବ୍ଧତା ହେତୁ ହୋଇଥାଏ । ଏହିପରି ଅବସ୍ଥାରେ ରୋଗୀ ଗୁଡ଼ିଏ କଫ ବାହାର କରି ପକାଇଲେ ଆଶ୍ୱସ୍ତି ଲାଭ କରେ । ଏହି ଜାତୀୟ ରୋଗୀମାନଙ୍କର ରୋଗର କାରଣ ଓ ଲକ୍ଷଣ ବିଷୟରେ ପୂର୍ଣ୍ଣ ଧାରଣା ରହିବା ଆବଶ୍ୟକ । କେତେକ ଖାଦ୍ୟ, ଔଷଧ, ମଦ୍ୟ, ରାସାୟନିକ ଗନ୍ଧ, ଅବାଞ୍ଛିତ ଦୃଶ୍ୟ, ମାନସିକ ଘାତ ପ୍ରତିଘାତ ଶ୍ୱାସ ଜନ୍ମାଇ ପାରେ । ଏଣୁ ପ୍ରତ୍ୟେକ କ୍ଷେତ୍ରରେ ଶ୍ୱାସ ଆକ୍ରମଣର କାରଣ କଅଣ ତାହା ଉଦ୍‌ଘାଟନ କରିବା ଆବଶ୍ୟକ । ଅନ୍ତଃଗତ ରୋଗ, ଚର୍ମ ରୋଗ କିଛିଦିନ ହେବା ପର ରକ୍ତରେ ଇସ୍‌ନୋଫିଲିଆ ବଢ଼ି ଅନେକ ସମୟରେ ଶ୍ୱାସ ହୋଇଥାଇପାରେ ।

ସାଧାରଣ ସ୍ୱାସ୍ଥ୍ୟର ଯତ୍ନନେବା, ଶାରୀରିକ ଓ ମାନସିକ ଅବସନ୍ନତାରୁ ଦୂରରେ ରହିବା, କୋଷ୍ଠଶୁଦ୍ଧି ନିୟମିତ ରଖିବା, ଅତ୍ୟଧିକ ଖାଦ୍ୟ ଖାଇ ପାକସ୍ଥଳୀକୁ

ଭାରାକ୍ରାନ୍ତ ନ କରାଇବା ପ୍ରଭୃତି କେତେକ ସାଧାରଣ ନିୟମମାନି ଚଳିଲେ ଶ୍ୱାସ ଆକ୍ରମଣର ଦାରୁଣ ଯନ୍ତ୍ରଣାରୁ ରକ୍ଷା ମିଳେ ।

ଶ୍ୱାସରୋଗୀଗଣ ରାତିରେ ଲଘୁ ଖାଦ୍ୟ ଖାଇବା ଆବଶ୍ୟକ । ସନ୍ଧ୍ୟା ପୂର୍ବରୁ ଖାଇଦେଲେ ଅଧିକ ସୁଫଳ ମିଳେ । ଯେଉଁ ଖାଦ୍ୟ ରୋଗୀର ଅନୁକୂଳ ସେହି ଖାଦ୍ୟ ଖାଇବା ପ୍ରୟୋଜନ ।

ଏହି ରୋଗର ଚିକିତ୍ସା କରିବା ସମୟରେ କାରଣ ଅନୁଯାୟୀ ପ୍ରତିକାର କରିବା ଆବଶ୍ୟକ । ଏହି ରୋଗ ଯେପରି ଆକ୍ରମଣ ନ କରେ ସେଥିପାଇଁ ଆବଶ୍ୟକ ପ୍ରତିଷେଧକ ଉପାୟଗୁଡ଼ିକ ନିଷ୍ଠାର ସହିତ ପାଳନ କରିବା ବିଧେୟ । ଏହି ରୋଗୀ-ମାନଙ୍କର ବୟସ ନିର୍ବିଶେଷରେ ଶ୍ୱାସପ୍ରଶ୍ୱାସ ଶୋଧକ ବ୍ୟାୟାମ ( Breathing exercise ) କରିବା ଏକାନ୍ତ କର୍ତ୍ତବ୍ୟ । ଏହି ରୋଗ ଆକ୍ରମଣ କରିବା ଅବସ୍ଥାରେ ବେଞ୍ଜୋମୋନ ଏକ ସପ୍ତାହ ପର୍ଯ୍ୟନ୍ତ ପ୍ରତି ଦିନ ପ୍ରୟୋଗ କଲେ ଯଥାର୍ଥ ସୁଫଳ ଦିଏ ।

ଡ୍ରେସମା ଏବଂ କୋଫିଲେଜାନ ବଟିକା ଏହି ସମୟରେ ବ୍ୟବହାର କରିବା ଦ୍ୱାରା ଏହା ନିଃସାରଣରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଶ୍ୱାସନଳୀଗତ ଶ୍ୱାସ ରୋଗରୁ ମୁକ୍ତ କରିଥାଏ । ରୋଗର ଆକ୍ରମଣ ଅବସ୍ଥାରେ ମେଡ଼ିଟାବ ବିଶେଷ ଉପକାର ଦର୍ଶାଇଥାଏ । ଏହିପରି ଅବସ୍ଥାରେ ତେସଲ ଛାତିରେ ମାଲିସ୍ କରିବା ଦ୍ୱାରା ଚିକିତ୍ସା କ୍ରିୟା ବିଶେଷ ସୁଗମ ହୋଇଥାଏ । ପ୍ରତିଦିନ ଆଇବୋସାର୍ଜ ବ୍ୟବହାର କଲେ ଶ୍ୱାସରୋଗୀର ସାଧାରଣ ସ୍ୱାସ୍ଥ୍ୟ ସୁରକ୍ଷିତ ହୋଇଥାଏ ।

### ଶିଶୁ ଚିକିତ୍ସା—

ବାସ୍ତବ ଶିଶୁ ଚିକିତ୍ସା ମା'ର ଗର୍ଭାଧାନ ସମୟରୁ ଆରମ୍ଭ ହୋଇଥାଏ । ଏହି ସମୟରୁ ମା'ମାନେ ଯଥାର୍ଥ ସାବଧାନ ହୋଇଥିଲେ ଭବିଷ୍ୟତରେ ବହୁ ଦୂରାରୋଗ୍ୟ ଶିଶୁ ରୋଗକୁ ଏଡ଼େଇ ହୋଇପାରିବ ।

ଗର୍ଭାବସ୍ଥାରେ ଗର୍ଭିଣୀମାନେ ନିୟମିତ ଅଭ୍ୟାସର ବଶବର୍ତ୍ତିନୀ ହେବା ଆବଶ୍ୟକ । ଉପଯୁକ୍ତ ଖାଦ୍ୟ ଖାଇବା, ଯଥାର୍ଥ ବ୍ୟାୟାମ କରିବା ଏକାନ୍ତ କର୍ତ୍ତବ୍ୟ । ଏ ଦୁଇଟି ଅଭ୍ୟାସ ଅତିରିକ୍ତ ହେଲେ ସର୍ବଦା କ୍ଷତିକାରକ ହୋଇଥାଏ । ଗର୍ଭିଣୀ ଯେପରି ଅତ୍ୟଧିକ, ଶାରୀରିକ, ମାନସିକ ଶ୍ରାନ୍ତିରୁ ଦୂରରେ ରହିବ ସେଥିପ୍ରତି ପରିବାରବର୍ଗ ଧ୍ୟାନ ଦେବା ଆବଶ୍ୟକ । ଗର୍ଭାବସ୍ଥାର ପ୍ରଥମ ତିନି ମାସ ମଧ୍ୟରେ ଗର୍ଭିଣୀ ଏଣୁ ତେଣୁ ଗୁଡ଼ାଏ ଔଷଧ ଖାଇବା ଅନୁଚିତ । କାରଣ ଏଥିପାଇଁ ଅନେକ ସମୟରେ ଗର୍ଭସ୍ଥ ଶିଶୁ ଶାରୀରିକ ଓ ମାନସିକ ବିକୃତି ସମ୍ପନ୍ନ ମୃତ୍‌ଗର୍ଭ ହୋଇ ଜନ୍ମ ନେଇଥାଏ । ଯେଉଁ ସମସ୍ତ ପୁଷ୍ଟିକାରକ ଔଷଧରେ କାଲସିଅମ୍ ଲୌହ ଓ ଫଲିକ୍ ଏସିଡ୍ ଥାଏ, ତାହା ପ୍ରୟୋଗ କଲେ ଗର୍ଭସ୍ଥ ଶିଶୁର

ଅଭିବୃଦ୍ଧିରେ ସାହାଯ୍ୟ କରିଥାଏ । ଗର୍ଭ ଛଅ ମାସ ହେବା ପର ଅନ୍ୟାନ୍ୟ ପୁଷ୍ଟିକାରକ ଔଷଧ ସଙ୍ଗେ ଆଲବୋସାଙ୍ଗ ପ୍ରୟୋଗ କଲେ ବିଶେଷ ସୁଫଳ ମିଳିଥାଏ । ଶିଶୁର ଶାରୀରିକ ଗଠନ ଅନେକ ସମୟରେ ପିତାମାତାଙ୍କର ଶାରୀରିକ ଗଠନ ଉପରେ ନିର୍ଭର କରିଥାଏ । କିନ୍ତୁ ଗର୍ଭାବସ୍ଥାରେ ଏଣୁ ତେଣୁ ଗୁଡ଼ାଏ ଔଷଧ ବ୍ୟବହାର କଲେ ବା ଗର୍ଭିଣୀ କୌଣସି ସଂକ୍ରାମକ ରୋଗଦ୍ୱାରା ଆକ୍ରାନ୍ତ ହେଲେ ଗର୍ଭସ୍ଥ ଶିଶୁ ବିକୃତ ଆକାର ପ୍ରକାର ହେବା ସମ୍ଭାବନା ଥାଏ । ଅକାଳ ଜାତ ଶିଶୁର ପରିଚର୍ଯ୍ୟା ବିଶେଷ ଯତ୍ନସାପେକ୍ଷ । କାରଣ ଶିଶୁର ଆଭ୍ୟନ୍ତରୀଣ ଯନ୍ତ୍ରଗୁଡ଼ିକ (ଅଙ୍ଗପ୍ରତ୍ୟଙ୍ଗ) ଠିକ୍ ଭାବେ ପୂର୍ଣ୍ଣାଙ୍ଗ ହୋଇ ନ ଥାଏ । ଏଣୁ ଶିଶୁର ଚୟାପଚୟ କ୍ରିୟା ବାଧାପ୍ରାପ୍ତ ହୋଇ ଶିଶୁର ପରିପାକ କ୍ରିୟା ଓ ମଳମୂତ୍ର ତ୍ୟାଗ ବିକୃତିଗ୍ରସ୍ତ ହେବା ସମ୍ଭାବନା । ଏପରି ଅବସ୍ଥାରେ ଶିଶୁକୁ ଲଘୁ ମାତ୍ରାରେ ସ୍ଥଳବିଶେଷରେ ନ୍ୟୂନ୍ୟ ପରିମାଣରେ ଔଷଧ ପ୍ରୟୋଗ କରିବା ଆବଶ୍ୟକ ।

ଶିଶୁମାନେ ସହଜରେ ସଂକ୍ରାମକ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ମାତ୍ର ବିସ୍ମୟର କଥା ଜଡ଼ାତେଲ ପିଇବାକୁ ଦେଲେ ସେମାନେ ତାହା ସହ୍ୟ କରିପାରନ୍ତି । ଏଣୁ ମା'ମାନଙ୍କର ଦେଖିବାର କଥା ପିଲମାନେ ସହଜରେ ହଜମ କରିପାରୁଥିବା ଖାଦ୍ୟ ଖାଉଛନ୍ତି; ଏଣୁ ତେଣୁ ଅଖାଦ୍ୟ, ଥଣ୍ଡା ଖାଦ୍ୟ ବା ମାଛିବସିଥିବା ଖାଦ୍ୟ ଖାଉ ନାହାନ୍ତି । ପିଲମାନଙ୍କର ପରିପାକ କ୍ରିୟାଟିକୁ ଜଗିଲେ ଶିଶୁମାନଙ୍କୁ ଅନେକ ରୋଗ ଆକ୍ରମଣରୁ ରକ୍ଷା କରି ହୁଏ । ପିଲମାନଙ୍କୁ ସେମାନଙ୍କର ବଢ଼ିବା ଅବସ୍ଥାରେ କୌଣସି ସଂକ୍ରାମକ ରୋଗ ଧରିଲେ, ସେମାନଙ୍କର ଅଭିବୃଦ୍ଧିରେ ବାଧା ଜନ୍ମେ । ଏଣୁ ସେମାନଙ୍କୁ କୌଣସି ସଂକ୍ରାମକ ରୋଗ ଧରିଲେ ଯଥା ଶୀଘ୍ର ପ୍ରତିକାର କରିବା ଆବଶ୍ୟକ । ବସନ୍ତ, ପାଣିବସନ୍ତ (ରୋମାନ୍ତିକା) ଶିଶୁ ପକ୍ଷାଘାତ (Poliomyelitis) ହୁପିଂ କଫ ପ୍ରଭୃତି ରୋଗଗୁଡ଼ିକକୁ ପ୍ରାରମ୍ଭିକ ଓ ଦ୍ୱିତୀୟକ ଟୀକା ଦେବା ଦ୍ୱାରା ଏହିସମସ୍ତ ରୋଗ ଆକ୍ରମଣରୁ ଶିଶୁମାନଙ୍କୁ ସହଜେ ରକ୍ଷା କରିହେବ ।

ସ୍ତ୍ରୀ ମାନଙ୍କର ଗର୍ଭାବସ୍ଥାରେ ଲଘୁ ଓ ପୁଷ୍ଟିକାରକ ଖାଦ୍ୟ ଦେବାରେ ଯେପରି ଆବଶ୍ୟକତା ଅଛି, ଶିଶୁମାନଙ୍କର ଅଭିବୃଦ୍ଧି ପାଇଁ ତଦ୍ରୂପ ଲଘୁ ଓ ପୁଷ୍ଟିକର ଖାଦ୍ୟ ଖାଇବାର ପ୍ରୟୋଜନୀୟତା ଅଛି । ଏଣୁ ଶିଶୁମାନଙ୍କୁ ସେମାନଙ୍କ ରବଢ଼ିବା ସମୟରେ ଯଥାର୍ଥ ଲଘୁ, ସହଜ ପାଚ୍ୟ ଓ ପୁଷ୍ଟିକର ଖାଦ୍ୟ ଦେବା ଆବଶ୍ୟକ । ଏହି ବୟସର ପିଲମାନଙ୍କୁ ଦୁଧ ସହ ପ୍ରତିଦିନ ପୁଷ୍ଟିକର ଖାଦ୍ୟଦେଲେ ସେମାନଙ୍କର ଯାବତୀୟ ପୌଷ୍ଟିକ ଆବଶ୍ୟକତା ପୂରଣ ହୋଇଥାଏ ।

ଶିଶୁମାନଙ୍କର ନିୟମିତ କୋଷ୍ଠ ପରିଷ୍କାର ହେଉ ନ ଥିଲେ ସେଥିପାଇଁ ଟାକ୍ସିନ୍ ଗୋଟିଏ ସୁନିର୍ବାଚିତ ଔଷଧ । ସେମାନଙ୍କର କ୍ଷୁଧା ଅଭିବୃଦ୍ଧି ପାଇଁ ସାଲଫସ ଓ ବାଇଓସାଲ ବ୍ୟବହାର କଲେ ଆଶାନୁରୂପ ଫଳ ମିଳିଥାଏ । ଶିଶୁମାନଙ୍କର ଭଲ ହଜମ ହେଉ ନ ଥିଲେ, ସେଠାରେ ହାର୍ବାଲବିଟର ଭଲ କାର୍ଯ୍ୟ କରେ । ମ୍ୟାଲେରିଆ

ଜ୍ୱର ଯୋଗୁଁ ଯକୃତ୍ ବଢ଼ିଥିଲେ, ସେ ସ୍ଥଳରେ ଆଇଓକ୍ୱଇନ୍ କିମ୍ବା କାଇନୋ-ଟୋମିନ୍ ପ୍ରୟୋଗ କରିବା ଆବଶ୍ୟକ ।

## ଶିଶୁମାନଙ୍କର ଦାନ୍ତ ଉଠିବା–

ଶିଶୁମାନଙ୍କୁ ସାଧାରଣତଃ ଛଅମାସ ହେଲେ ସେମାନଙ୍କ ଦାନ୍ତଉଠେ । ଏହି ସମୟଟି ଶିଶୁମାନଙ୍କ ପକ୍ଷରେ ଏକ ସଙ୍କଟଜନକ ସମୟ । ଏହି ସମୟେ ଅଧିକାଂଶ ଶିଶୁ ବାନ୍ତି ଓ ତରଳ ଝାଡ଼ା ରୋଗରେ ପଡ଼ନ୍ତି । ଯଦି କୌଣସି ଶିଶୁର ସେ ସମୟରେ ଦାନ୍ତ ନ ଉଠେ, ସେମାନଙ୍କ ଶରୀରରେ ପୁଷ୍ଟିକାରକ ଖାଦ୍ୟସାର ଅଭାବ ଅଛି ବୋଲି ବୁଝିବାକୁ ହେବ । ଏଣୁ ଏହି ସମୟରେ ନିୟମିତ ଭାବରେ ଆଲବୋସାଙ୍ଗ ବ୍ୟବହାର କରାଇଲେ, ସେମାନଙ୍କର ଖାଦ୍ୟସାର ଅଭାବ ଦୂର ହେବା ସଙ୍ଗେ ସଙ୍ଗେ ଶାରୀରିକ ପୁଷ୍ଟିସାଧିତ ହୋଇଥାଏ ଏବଂ ସହଜରେ ସେମାନଙ୍କର ଦାନ୍ତ ବାହାରି-ଥାଏ ।

ଯେଉଁ ଶିଶୁମାନଙ୍କର ଆବଶ୍ୟକ ଖାଦ୍ୟସାରର ଅଭାବ ଘଟେ । ସେମାନଙ୍କର ଦାନ୍ତଜନିତ ନାନା ବିକାର ଦେଖାଦିଏ । ଏଣୁ ଏହି ଅବସ୍ଥାଟି ପ୍ରତି ମା'ମାନେ ଉପଯୁକ୍ତ ଧ୍ୟାନ ଦେବା ଆବଶ୍ୟକ । ଦାନ୍ତ ଉଠିବା ସମୟରେ ସାଲଫସ୍ ଶିଶୁମାନଙ୍କ ପାଇଁ ଗୋଟିଏ ସୁନିର୍ବାଚିତ ଔଷଧ । ଶିଶୁମାନଙ୍କର ଶାରୀରିକ ପୀଡ଼ା ଜନିତ ଅବସ୍ଥାରେ ଫେନୋକାଲସିନ୍ ପ୍ରୟୋଗ କରିବା ଆବଶ୍ୟକ । ଯଦି ଶିଶୁଟି ବିଶେଷ ଅସ୍ତବ୍ୟସ୍ତ ଓ ଚିଡ଼ିଚିଡ଼ା ସ୍ୱଭାବର ହୋଇଥାଏ । ସେ ସ୍ଥଳରେ ଭାଇଟାଇ ଏସେନ୍ସ ପ୍ରୟୋଗ କଲେ ସୁଫଳ ମିଳିଥାଏ ।

## ରକ୍ତଚାପ ବୃଦ୍ଧି–

ପରିଣତ ବୟସରେ ସାଧାରଣତଃ ରକ୍ତଚାପାଧିକ୍ୟ ହୋଇଥାଏ । ଏହାକୁ ସାଧାରଣତଃ ଅହେତୁକ ରକ୍ତଚାପ ( Essential Hypertension ) କୁହାଯାଇଥାଏ । ଗର୍ଭାବସ୍ଥାରେ ମଧ୍ୟ ଗର ( Toxin ) ମୟତା ହେତୁ ରକ୍ତଚାପ ବୃଦ୍ଧି ପାଇଥାଏ । ରକ୍ତଚାପର ପରିମାଣ ବୃଦ୍ଧି ହେଲେ, ମୁଣ୍ଡବ୍ୟଥା, ଅବସାଦ, ଶ୍ୱାସକଷ୍ଟ ଶ୍ରାନ୍ତି, ସମୟ ସମୟରେ ମାନସିକ ଉତ୍ତେଜନା, ନିଦ୍ରାହୀନତା, ହୃତସ୍ପନ୍ଦନର ବୃଦ୍ଧି ପ୍ରଭୃତି ଲକ୍ଷଣ ପ୍ରକାଶ ପାଇଥାଏ । ଏହାର ପରିଣତି ସ୍ୱରୂପ, ହୃତ୍‌ସ୍ପନ୍ଦନ, ଅବରୋଧ, ବୃକ୍କର ଅକ୍ଷମତା, ପକ୍ଷାଘାତ, ଦୃଷ୍ଟିଶକ୍ତି ହାନି ଘଟିଥାଏ । ଏହି ଅବସ୍ଥାରେ ରୋଗୀକୁ ହସ୍ପିଟାଲରେ ରଖି ଚିକିତ୍ସା କରିବା ସୁବିଧାଜନକ ।

ସମୟ ସମୟରେ ବୃକ୍କର ବିକୃତି ହେତୁ ରକ୍ତଚାପ ବଢ଼ିଥାଏ । ଏ ଅବସ୍ଥାଟି ବିଶେଷ ସଂକଟାପନ୍ନ । ସମୟ ସମୟରେ ମାନସିକ କାରଣରୁ ରକ୍ତଚାପର ମାତ୍ରା ବଢ଼ିଥାଏ । ମାତ୍ର ଏପରି କାରଣ ବିଦ୍ୟମାନ ଥିଲେ ରକ୍ତଚାପ ହ୍ରାସକ ଔଷଧ ପ୍ରୟୋଗ କରିବା ଅନୁଚିତ । ଏହି ଅବସ୍ଥାରେ ଭାଇଟାଇ ଏସେନ୍ସ ଦିନକୁ ତିନିଟା

ବଟିକା ପ୍ରୟୋଗ କଲେ ମାନସିକ ଉଦ୍‌ବେଗ ଓ ଆବେଗ କମିଯାଇଥାଏ । ରକ୍ତଚାପର ଆଧିକ୍ୟ ବା ନ୍ୟୂନତା ସ୍ଥଳରେ ଆଲବୋସାଗ ବ୍ୟବହାର କଲେ, ଦେହର ଯଥାର୍ଥ ପୁଷ୍ଟିକାରିତା ସମ୍ପାଦନ କରି ରକ୍ତଚାପକୁ ନିୟମିତ କରେ । ଏହି ରୋଗୀମାନଙ୍କର କୋଷ୍ଠବଦ୍ଧତା ଥିଲେ ଷ୍ଟୋଲକ୍‌ସ ପ୍ରୟୋଗ କରିବା ଆବଶ୍ୟକ ।

## ଅହେତୁକ ରକ୍ତଚାପ ବୃଦ୍ଧିର ଚିକିତ୍ସା—

ଖାଦ୍ୟ ପାନୀୟ ଗ୍ରହଣରେ ନିୟମିତତା, ରାତିରେ ଲଘୁ ଖାଦ୍ୟ ଖାଇବା, ଅତ୍ୟଧିକ ଗ୍ରହା କଫି ପିଇବା, ମଦ୍ୟ ଓ ଧୂମପାନରୁ ବିରତ ରହିବା ଏହି ରୋଗର ଚିକିତ୍ସା ପାଇଁ ବିଶେଷ ସହାୟକ । ଫଳରସ ପାନ ଏହି ରୋଗ ଦୂର କରିବାରେ ସାହାଯ୍ୟ କରେ । ଫଳରସ ପାନଦ୍ୱାରା, କୋଷ୍ଠକାଠିନ୍ୟ ଦୂର ଓ ମୂତ୍ର ସଫା ହୁଏ । ମୂତ୍ରକାରକ ଦ୍ରବ୍ୟ ସେବନଦ୍ୱାରା ଶରୀରରୁ ଦୂଷିତାଂଶ ବହୁ ପରିମାଣରେ ମୂତ୍ରରେ ଚାଲିଯାଏ । ଫଳରେ ରକ୍ତଚାପର ମାତ୍ରା କମିଯାଏ । ଏଣୁ ଫଳରସ ଏଥିପାଇଁ ବିଶେଷ ଉପଯୋଗୀ ।

ଏହା ସାଧାରଣତଃ ନାକ, ମଳଦ୍ୱାର (ଅର୍ଶଜନିତ) ଓ ଜରାୟୁରୁ ହୋଇଥାଏ । ମାନସିକ ଆଘାତ ଅତି ରକ୍ତସ୍ରାବର ଅନ୍ୟତମ କାରଣ । ଏହିପରି ଅବସ୍ଥା ଥିଲେ ଭାଇଟାଲ ଏସେନ୍‌ସ ପ୍ରୟୋଗ କଲେ ସ୍ନାୟୁର ଉତ୍ତେଜନା କମିଯାଇ, ସୁନିଦ୍ରା ହୁଏ ଏବଂ ଅବସ୍ଥା ପାଇଁ ଚିନିୟମକୋ ବିଶେଷ ଉପଯୋଗୀ ।

## କର୍ଣ୍ଣସ୍ରାବ—

ଏହା ବହିଃ ଅଂଶ ବା ମଧ୍ୟ କର୍ଣ୍ଣରୁ ହୋଇପାରେ । କର୍ଣ୍ଣସ୍ରାବ ବହିର୍ଭାଗରୁ ହେଉଥିଲେ, ସେ ଅବସ୍ଥାରେ କର୍ଣ୍ଣବିନ୍ଦୁ ବା ବିଶୋଧକ ପାଉଡ଼ର ପକାଇବା ଆବଶ୍ୟକ । ଏଥିପାଇଁ ହିଲନ୍ ପାଉଡ଼ର ବିଶେଷ ଉପଯୋଗୀ । ମଧ୍ୟ କର୍ଣ୍ଣସ୍ରାବ ନୂତନ ବା ଚିରକାରୀ ହୋଇଥାଇ ପାରେ । ଏହା ପ୍ରାରମ୍ଭିକ ଅବସ୍ଥାରେ ପ୍ରଦାହ ଓ ଯନ୍ତ୍ରଣାଯୁକ୍ତ ହୋଇଥାଏ । ଶିଶୁମାନେ ଏହି ଅବସ୍ଥାରେ ବିଶେଷ ଆକ୍ରାନ୍ତ ହୋଇଥାନ୍ତି । ଡେସିଲ ଏ ଅବସ୍ଥା ପାଇଁ ଏକ ସୁନିର୍ବାଚିତ ଔଷଧ । ଏହା ବ୍ୟତୀତ ରୋଗର ଯନ୍ତ୍ରଣା ଓ ଲକ୍ଷଣ ଅନୁଯାୟୀ ଅନ୍ୟ ଔଷଧ ଦିଆଯାଇପାରେ । କର୍ଣ୍ଣପଟହରେ ପୂୟମୟତା ଦେଖାଗଲେ ତାହା ଏକ ଚିରକାରୀ ଅବସ୍ଥା ସୃଷ୍ଟିକରେ । ଏହି ଅବସ୍ଥାରେ ଆଂଶିକ ବଧୀରତା ଦେଖା ଦେଇଥାଏ । ଏଣୁ ଏ ସ୍ଥଳରେ ଧାରାବାହିକ ଚିକିତ୍ସା ବ୍ୟବସ୍ଥା ଚାଲୁ ରଖିବାକୁ ହେବ । ଆଣ୍ଟିବାଇଓଟିକ୍ ଔଷଧ ଓ ପୂୟନାଶକ କର୍ଣ୍ଣବିନ୍ଦୁ ନିୟମିତ ବ୍ୟବହାର କରିବା ଏକାନ୍ତ ଆବଶ୍ୟକ । ଏନ୍‌ଟ୍ରପସ ଦିନକୁ ଦୁଇଥର ଏବଂ ହିମୋ-ପ୍ଲେକ୍‌ସ ଦିନକୁ ଚାରିଥର ପ୍ରୟୋଗ କଲେ ବିଶେଷ କାମ ଦେଖାଇଥାଏ । ଏ ଅବସ୍ଥାରେ ମେଥିଲଏଡ୍, ଗରମପାଣିରେ ମିଶାଇ ପ୍ରତିଦିନ ଗ୍ରହଣ କରିବା ଆବଶ୍ୟକ ।

ରୋଗୀର ସାଧାରଣ ସ୍ୱାସ୍ଥ୍ୟ ଓ ରୋଗ ପ୍ରତିରୋଧକ ଶକ୍ତି ବଢ଼ାଇବା ପାଇଁ ନିୟମିତ ଭାବରେ ଆଇବୋସାଙ୍ଗ ପ୍ରୟୋଗ କରାଯାଇପାରେ ।

ଚକ୍ଷୁ ରୋଗ –

ରସକେଣ୍ଟକୁ ଡିଷ୍ଟିଲଡ୍ ପାଣିରେ ମିଶାଇ ନେତ୍ରବିନ୍ଦୁ କରାଯାଇପାରେ । ଏଣୁ ଆଖିରେ ଜ୍ୱାଳା ଓ ପ୍ରଦାହ ଥିଲେ ଏହା ପ୍ରୟୋଗ କରାଯାଇପାରେ । ଏଥି ସହିତ ଚିନିୟମକୋ ପ୍ରୟୋଗ କଲେ ବିଶେଷ ଫଳ ଦାୟକ ହୋଇଥାଏ ।

ସ୍ତ୍ରୀ ଜନନେନ୍ଦ୍ରିୟ ଜନିତ ରୋଗ–

ଏହି ରୋଗ ସ୍ତ୍ରୀ ଜନନେନ୍ଦ୍ରିୟ ଯଥା ଜରାୟୁ, ଡିମ୍ବବାହିକା ଡିମ୍ବାଶୟ ପ୍ରଭୃତି ସ୍ଥାନର ବିକୃତି ଯୋଗୁଁ ହୋଇପାରେ । ଗ୍ରନ୍ଥି ରସ (ହରମୋନ) ଉତ୍ପାଦନର ବିଷମତା ଅଥବା ଜନନେନ୍ଦ୍ରିୟର କୋଷଗୁଡ଼ିକର ବିକୃତି ହେତୁ ବିଭିନ୍ନ ପ୍ରକାର ସ୍ତ୍ରୀ ରୋଗ ଜନ୍ମିପାରେ । ପ୍ରଥମ ଋତୁସ୍ରାବ ସମୟରେ ବା ଋତୁ ବିରତି ସମୟରେ କେତେକ ସ୍ୱତନ୍ତ୍ର ବିକାର ଦେଖାଯାଇଥାଏ । ମାସିକ ଋତୁସ୍ରାବ କାହାରି କାହାରି ଅତ୍ୟଧିକ । ସ୍ୱଳ୍ପ ବା ଅନିୟମିତ ହୋଇଥାଏ । ଏହା ସମୟ ସମୟରେ ବେଦନାସହିତ ବା ବେଦନାରହିତ ହୋଇଥାଏ । ଏଣୁ ଏ ସ୍ଥଳରେ ରୋଗର ଯଥାର୍ଥ କାରଣ ଅନୁସନ୍ଧାନ କରି ଚିକିତ୍ସା କାର୍ଯ୍ୟରେ ପ୍ରବୃତ୍ତ ହେବା ଆବଶ୍ୟକ । ଭାଇଟାଲ ଏସେନ୍ସ ଏପରି ଅବସ୍ଥାରେ ଏକ ଫଳପ୍ରଦ ଶାମକ ଔଷଧ ଭାବରେ ବ୍ୟବହାର କରାଯାଇପାରେ ।

ରଜକୃଚ୍ଛ୍ରତା–

(ଋତୁସ୍ରାବ ବେଦନା ସହିତ) ଏକ ସ୍ଥଳବିଶେଷରେ କୋଷଗୁଡ଼ିକର ସହଜ ବିକାର ବା ଜରାୟୁରେ ତନ୍ତୁର ଅର୍ବୁଦ ବୃଦ୍ଧି ବା ଉଲ୍ଲେଖଯୋଗ୍ୟ କାରଣ ରହିତ ହୋଇପାରେ । ଏପରି ସ୍ଥଳରେ ଶାମକ ଔଷଧର ପ୍ରୟୋଗ ଓ ସାନ୍ତ୍ୱନା ଦେବା ସର୍ବାଦୌ କର୍ତ୍ତବ୍ୟ । ଅଙ୍ଗଗ୍ରହ ଜନିତ ପୀଡ଼ାସ୍ଥଳରେ ବ୍ରହ୍ମାଡ଼ାଇନ୍ ହେଉଛି ଉତ୍କୃଷ୍ଟ ଔଷଧ । ଏ ସ୍ଥଳରେ ଭାଇଟାଲ ଏସେନ୍ସର ପ୍ରୟୋଗ ଏକ ଫଳପ୍ରଦ ଔଷଧ । ଦାରୁଣ ପୀଡ଼ା ସ୍ଥଳରେ ଚିନିୟମ୍ କୋ ବା ଆମିଗ୍ରୁୟା ସଫଳତା ସହିତ ପ୍ରୟୋଗ କରାଯାଇପାରେ । ରୋଗୀର ସାଧାରଣ ସ୍ୱାସ୍ଥ୍ୟରକ୍ଷା ଉପଯୁକ୍ତ ବ୍ୟାୟାମ, ରକ୍ତହୀନତା ଓ କୋଷ୍ଠକାଠିନ୍ୟ ଥିଲେ ସେଥିପ୍ରତି ଧ୍ୟାନ ଦେବା ଏକାନ୍ତ ବାଞ୍ଛନୀୟ ।

ଅନ୍ୟାନ୍ୟ ଜରାୟୁ ବିକାର–

ରକ୍ତନ୍ୟୁନତା ସ୍ଥଳରେ ଅଉରାଟିନିୟମ୍ ୧ରୁ ୨ଟି ବଟିକା ଦିନକୁ ତିନିଟି ବଟିକା ପ୍ରୟୋଗ କରାଯାଇପାରେ । ଅତ୍ୟାର୍ତ୍ତବ ଓ ଅକ୍ରମଆର୍ତ୍ତବ ସ୍ଥଳରେ ଚିନିୟମକୋ, ଗୋଟିଏ ଉତ୍କୃଷ୍ଟ ଔଷଧ ।

ଶ୍ୱେତପ୍ରଦର–

ଶ୍ୱେତ ପ୍ରଦରର ନିର୍ଦ୍ଦିଷ୍ଟ କାରଣ କଅଣ ତାହା ଅନେକ ସମୟରେ ସୁସ୍ପଷ୍ଟ ଭାବରେ ଜଣାପଡ଼େ ନାହିଁ । କିନ୍ତୁ ଏ କଥା ଦୁର୍ବଳଶରୀର ସ୍ତ୍ରୀମାନଙ୍କୁ ଏହା ବିଶେଷ ଭାବରେ ଆକ୍ରମଣ କରିଥାଏ । ଏପରି ଅବସ୍ଥାରେ ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ବିଧାନ ପାଇଁ ଆଲବୋସାଙ୍ଗ ପ୍ରୟୋଗ କରାଯାଇ ପାରେ । ରୋଗର ଲଘୁପୀଡ଼ା ଅବସ୍ଥାରେ ବ୍ରାହ୍ମା-ଡାଇନ ପ୍ରୟୋଗ କଲେ ସୁଫଳ ମିଳିଥାଏ । ରୋଗର ପ୍ରବଳତର ଅବସ୍ଥାରେ ଅଉରା-ଟିନିୟମ୍ ଏବଂ ଟିନିୟମ୍‌କୋ ମିଳିତ ଭାବରେ ପ୍ରୟୋଗ କଲେ ସଫଳ ମିଳିଥାଏ । ଅନେକ ସଂକ୍ରାମକ ଯୌନରୋଗ ହେତୁ ଏପରି ଶ୍ୱେତସ୍ରାବ ହୋଇପାରେ । ସେପରି ସ୍ଥଳରେ ବାହ୍ୟିକ ଜୀବାଣୁନାଶକ ବ୍ୟବସ୍ଥା ଓ ଆଭ୍ୟନ୍ତରୀଣ ଔଷଧ ପ୍ରୟୋଗ କରିବା ଆବଶ୍ୟକ । ଆଭ୍ୟନ୍ତରୀଣ ପ୍ରୟୋଗ ପାଇଁ ଆଇଓବିନ୍ ଗୋଟିଏ ଫଳପ୍ରଦ ଔଷଧ ଭାବରେ ବିବେଚିତ ।

ଗର୍ଭାବସ୍ଥା –

ଗର୍ଭାବସ୍ଥା ସମୟରେ ନିୟମିତ ଆଲବୋସାଙ୍ଗ ପ୍ରୟୋଗ କରିବାଦ୍ୱାରା ଗର୍ଭିଣୀ ତଥା ଗର୍ଭସ୍ଥ ଶିଶୁର ପୁଷ୍ଟିବିଧାନ ହୋଇଥାଏ । ସ୍ତନ୍ୟଦାୟିନୀ ମା'ମାନଙ୍କୁ ଏହା ଦେଲେ ଯଥେଷ୍ଟ ସ୍ତନ୍ୟ ଉତ୍ପାଦନ ହୋଇଥାଏ ।

ପ୍ରସବାବସ୍ଥା –

ପ୍ରସବକାଳୀନ ଶୂଳବେଦନା ଅନେକଙ୍କ ପକ୍ଷରେ ବିଶେଷ କଷ୍ଟଦାୟକ ହୋଇଥାଏ । ଏପରି ସ୍ଥଳରେ ଅଉରାଟିନିୟମ୍ ପ୍ରୟୋଗ କଲେ ପ୍ରସବକ୍ରିୟା ସରଳ ଓ ସୁଗମ ହୋଇଥାଏ । କୌଣସି ସ୍ଥଳରେ ଶୂଳବେଦନା ଜନ୍ମି କ୍ଷୀଣ ହୋଇଯାଉଥିଲେ, ଏହାର ପ୍ରୟୋଗ ଉକ୍ତ କ୍ରିୟାକୁ ସକ୍ରିୟ କରେ । ଏପରି ସ୍ଥଳରେ ସକାଳେ ଗୋଟିଏ ଅଉରାଟିନିୟମ୍ ଓ ସନ୍ଧ୍ୟାରେ ଗୋଟିଏ ଟିନିୟମ୍‌କୋ ପ୍ରୟୋଗ କଲେ ବିଶେଷ ସୁଫଳ ମିଳିଥାଏ । ମାନସିକ ଭୟ ଆଶଙ୍କା ଓ ଚଞ୍ଚଳତା ଦୂର କରିବାରେ ଭାଇଟାଲ ଏସେନ୍‌ସ ବିଶେଷ ସହାୟକ ହୋଇଥାଏ । ଯଦି ପ୍ରସବ ଯଥାଶୀଘ୍ର ନ ହୁଏ, ଗର୍ଭିଣୀର ମାନସିକ ଚଞ୍ଚଳତା ବଢ଼େ, ତାହାହେଲେ ସେ ସ୍ଥଳରେ ଭାଇଟାଲ ପ୍ରୟୋଗ କରିବା ବାଞ୍ଛନୀୟ । ପ୍ରସବପରେ ଯଦି ଅତ୍ୟଧିକ ରକ୍ତସ୍ରାବ ହୁଏ, ସେ ସ୍ଥଳରେ ଟିନିୟମ୍‌କୋ ପ୍ରୟୋଗ କଲେ ବିଶେଷ ସୁଫଳ ମିଳିଥାଏ । ପ୍ରସବ ପରେ ଜ୍ୱର ରହିଲେ ନବପ୍ରସୂତୀ ପକ୍ଷରେ ଏକାନ୍ତ ବିପଦଜନକ । ଏହି ଅବସ୍ଥାଟିର ସାମାନ୍ୟ ଉପେକ୍ଷା କଲେ ପରେ ନାନା ଜଟିଳତା ସୃଷ୍ଟି କରିଥାଏ । ଏହି କାରଣରୁ ଅନେକ ରାଜଯକ୍ଷ୍ମା ଆକ୍ରମଣର ସମ୍ମୁଖୀନ ହୋଇଥାନ୍ତି ।

ଜ୍ୱର—

ଜ୍ୱର ନାନା କାରଣରୁ ହୋଇପାରେ । ଏଠାରେ ସଂକ୍ଷେପରେ କେତେକ ଜ୍ୱର ଓ ଅଭିତାପର ଚିକିତ୍ସା ବର୍ଣ୍ଣନା କରାଯାଉଅଛି । ଅଂଶୁଘାତ (ପ୍ରଖର ସୂର୍ଯ୍ୟତାପ)ଯୋଗୁଁ ଉତ୍ତାପ ଆଧିକ୍ୟ ଦେଖା ଦେଲେ, କେବଳ ପୂର୍ଣ୍ଣ ବିଶ୍ରାମ ଓ ଫଳରସ ପିଇବାକୁ ଦେଲେ ବା ଶୀତଳ ପାନୀୟ ପ୍ରୟୋଗ କଲେ ଜ୍ୱରର ଉତ୍ତାପ କମି ଯାଇଥାଏ ।

ଡେସିଲ ପ୍ରୟୋଗ ଦ୍ୱାରା ଇନ୍‌ଫ୍ଲୁଏନ୍‌ଜା ସହଜରେ ଦୂର ହୋଇଥାଏ । ଏହା ଦ୍ୱାରା ଯାବତୀୟ ସ୍ନାୟୁଶୂଳ, ପେଶୀଶୂଳ, ଶାରୀରିକ ପୀଡ଼ା କମିଯାଏ ଏବଂ ଜ୍ୱରଜନିତ ଉତ୍ତାପ ହ୍ରାସ ଘଟିଥାଏ । ଏପରି ଅବସ୍ଥାରେ ରୋଗୀର ସାଧାରଣ ସ୍ୱାସ୍ଥ୍ୟ ଦୁର୍ବଳତା ପ୍ରତି ବିଶେଷ ଧ୍ୟାନ ରଖିବା ଆବଶ୍ୟକ । ଏଣୁ ଆଲବୋସାଙ୍ଗ ଏହି ଅବସ୍ଥାରେ ପ୍ରୟୋଗ କଲେ ଇନ୍‌ଫ୍ଲୁଏନ୍‌ଜାଜନିତ ଦୁର୍ବଳତା ସହଜେ ଦୂର ହୋଇଥାଏ ।

ଶିରଃଶୂଳ (ମୁଣ୍ଡବ୍ୟଥା)—

ଏହା ବିଭିନ୍ନ ରୋଗର ଉପସର୍ଗ ଭାବରେ ଦେଖାଯାଇଥାଏ । ତଦନୁଯାୟୀ ଯନ୍ତ୍ରଣାର ଉଗ୍ରତା ଓ ଲଘୁତା ପ୍ରକାଶ ପାଇଥାଏ । ବିଭିନ୍ନ ଜ୍ୱର ଏବଂ ସର୍ଦ୍ଦିରୋଗର ପ୍ରାରମ୍ଭ ଅବସ୍ଥାରେ ମଧ୍ୟ ଶିରଃଶୂଳ ଦେଖାଯାଇଥାଏ । ଏହା ବ୍ୟତୀତ କୋଷ୍ଠକାଠିନ୍ୟ, ଦେଖିବାରେ ଆଖିରେ ଚାପ ପଡ଼ିବା, ରକ୍ତଚାପର ଆଧିକ୍ୟ, ନାକ, ଦାନ୍ତ, କାନର ରୋଗ, ଅଧକପାଳି, ରକ୍ତହୀନତା, ବୃକ୍କରୋଗ ଯୋଗୁଁ ମଧ୍ୟ ଶିରଃଶୂଳ ହୋଇଥାଏ । ଏଣୁ କୌଣସି ଚିକିତ୍ସା ବ୍ୟବସ୍ଥା କରିବା ପୂର୍ବରୁ ରୋଗର କାରଣ କଅଣ ତାହା ନିର୍ଣ୍ଣୟ କରିବା ଆବଶ୍ୟକ । ଡେସିଲ ବା ଫେନୋବାଲସିନ୍ ମୁଣ୍ଡବିନ୍ଧା ପାଇଁ ଏକ ନିତ୍ୟ ଦରକାରୀ ଔଷଧ ଭାବରେ ବ୍ୟବହାର କରାଯାଇପାରେ । କୌଣସି କ୍ଷେତ୍ରରେ ଉଚ୍ଚଜ୍ୱରତାପ ଥିଲେ, ସେ ସ୍ଥଳରେ ଉତ୍ତାପ କମାଇବା ପାଇଁ ହର୍ମୋ-ପାଇରିନ୍ ଦେବା ଆବଶ୍ୟକ । ଏହି ସମୟରେ କପାଳରେ ବ୍ରବ୍‌ଜୋନ୍ ମାଲିସ୍ କଲେ ବେଶ୍ ଉପକାର ମିଳେ । ଶୋଇବା ସମୟରେ ଭାଇଟାଇ ଏସେନ୍‌ସ ପ୍ରୟୋଗ କଲେ, ସୁନିଦ୍ରା ହୋଇଥାଏ । ଶିରଃଶୂଳ ତୀବ୍ର ବେଦନାଦାୟକ ହୋଇଥିଲେ ନର୍ଭୋପ୍ଲେକ୍‌ସ ବଟିକା ଓ ଇଞ୍ଜେକସନ ବ୍ୟବସ୍ଥା କରିବା ଆବଶ୍ୟକ ।

କେଶ ରୋଗ—

ଅନେକ କ୍ଷେତ୍ରରେ ସାଧାରଣ ଦୁର୍ବଳତା, ଉପଯୁକ୍ତ ଖାଦ୍ୟପ୍ରାଣର ଅଭାବ ଏବଂ ବାଳମୂଳରେ ରୁପି ପ୍ରଭୃତି ହେବାଯୋଗୁଁ ବାଳ ଉପୁଡ଼ିଥାଏ । ଏପରି ଅବସ୍ଥାରେ ଆଲବୋ-ସାଙ୍ଗ ହେଉଛି ଏକ ସୁନିର୍ବାଚିତ ଔଷଧ ।

ଓଲସିନ୍ କେଶର ଅଭିବୃଦ୍ଧି ଓ ଅକାରଣ ପତନ ସ୍ଥଳରେ ବିଶେଷ ଉପକାର ଦେଖାଇଥାଏ । ଭ୍ରମ ମୂଳରେ ଯାଦୁ ହୋଇଥିଲେ ସେ ସ୍ଥଳରେ ମୁଣ୍ଡର ବାଳକୁ ଛୋଟ ଛୋଟ କରି କାଟି ସିନମେଣ୍ଟ ପ୍ରୟୋଗ କରିବା ଆବଶ୍ୟକ ।

ହୃତ୍ ରୋଗ—

ହୃତ୍ପିଣ୍ଡ ରୋଗାକ୍ରାନ୍ତ ହେଲେ, ଶ୍ୱାସକଷ୍ଟ, ଅବସନ୍ନତା, ହୃତ୍ସ୍ପନ୍ଦନର ଅଭିବୃଦ୍ଧି, ଛାତିରେ ଯନ୍ତ୍ରଣା, ପାଦ ଫୁଲିବା ପ୍ରଭୃତି ଲକ୍ଷଣ ଦେଖାଯାଏ । ପାଦ ଫୁଲା ଉପରେ ଚାପ ଦେଲେ, ତାହା ଦବିଯାଏ । ହୃତ୍ପିଣ୍ଡ ନାନା କାରଣରୁ ରୋଗାକ୍ରାନ୍ତ ହୋଇଥାଏ । ବିଶେଷତଃ ଆମବାତଜନିତ ଜ୍ୱରଯୋଗୁଁ ହୃତ୍ପାଟିକାର ସଙ୍କୋଚନ ( Mitra Stenosis ) ହୃତ୍ପିଣ୍ଡ ଆକ୍ରାନ୍ତ ହୋଇଥାଏ । ଏପରି ଅବସ୍ଥାରେ ଡେସିଲ୍, ଫେନୋକାଇସିନ ପ୍ରୟୋଗ କଲେ ତାହା ଆମଜନିତ ଜ୍ୱର ରୋଗର ଉତ୍ତାପ, ଗଣ୍ଠିଦରଜ ଓ ଫୁଲା କମାଇ ଦେଇଥାଏ । ଏହି ରୋଗରେ ଜୀବାଣୁ ସଂକ୍ରମଣଜନିତ ସ୍ଥାନିକ ପୂୟମୟତା ପାଇଁ ଆଣ୍ଟିବାଇଓଟିକ୍ ଔଷଧ ପ୍ରୟୋଗ କରାଯାଇପାରେ ।

ହୃତ୍ପିଣ୍ଡର ପରମଣ୍ଡଳୀୟ ହୃତ୍ଶୂଳ ( Argina pecioris ) ଅବସ୍ଥାରେ ଆମିଗ୍ରୁଆ ପ୍ରୟୋଗ କଲେ ସୁଫଳ ମିଳିଥାଏ । ହୃତ୍ପିଣ୍ଡର ପରିମଣ୍ଡଳୀୟ ରକ୍ତ ସ୍ପନ୍ଦନ ଗୋଟିଏ ଜଟିଳତମ ଅବସ୍ଥା । ଏହି ରୋଗୀକୁ ସର୍ବଦା ବିଛଣାରେ ଶୋଇ ରହିବାକୁ ପରାମର୍ଶ ଦେବା ଆବଶ୍ୟକ ବା ହସ୍ପିଟାଲରେ ରଖି ଚିକିତ୍ସା ବ୍ୟବସ୍ଥା କରିବାକୁ ହେବ । ଏହି ଅବସ୍ଥାରେ ସାଧାରଣତଃ ବେଦନାନାଶକ, ରକ୍ତସ୍ପନ୍ଦନନାଶକ, ରକ୍ତବାହିକାର ସ୍ଥୂଳବର୍ଦ୍ଧକ ଔଷଧ ପ୍ରୟୋଗ କରାଯିବା ଆବଶ୍ୟକ । ଏହି ଅବସ୍ଥାରେ କୌଣସି ପ୍ରକାର ବିରେଚକ ଔଷଧ ପ୍ରୟୋଗ କରିବା ଅନୁଚିତ । ଫଳରସ ପ୍ରୟୋଗ ଏପରି ଅବସ୍ଥାରେ ବିଶେଷ ହିତକାରକ । ଅନେକ ସମୟରେ ପରିପାକ ପ୍ରକ୍ରିୟାର ବିକୃତି ଓ ପେଟରେ ବାୟୁ ଜମିବା ହେତୁ ହୃତ୍ପୀଡ଼ା ଆରମ୍ଭ ହୋଇଥାଏ । ଏଣୁ ପେଟରେ ହଜମ ଶକ୍ତିର କୌଣସି ଗୋଳମାଳ ଥିଲେ ସାଇଫସ୍ ବା ସୋଲକ୍ସ ବ୍ୟବହାର କରାଇ ପରିପାକ ପ୍ରକ୍ରିୟାକୁ ଠିକ୍ ରଖିବାକୁ ହେବ ।

କାମଳ—

ଦେହର ଚର୍ମ ଓ ଚକ୍ଷୁର ଶ୍ୱେତପଟଳ ହଳଦିଆ ରଙ୍ଗ ଦେଖାଗଲେ, ତାହାକୁ କାମଳ ରୋଗ କୁହାଯାଇଥାଏ । ଏହା ସହିତ ଜ୍ୱର ଓ ଦେହରେ କୁଣ୍ଡାଇହେବା ପ୍ରଭୃତି ଲକ୍ଷଣ ଦେଖାଯାଏ । ହୃତ୍ସ୍ପନ୍ଦନର ମାତ୍ରା ମଧ୍ୟ କମି ଯାଇପାରେ । ଏହି ରୋଗରେ ମଳର ରଙ୍ଗ ଧଳା, ପରିସ୍ରାର ରଙ୍ଗ ଗାଢ଼ ହଳଦିଆ, ଦେଖାଯାଏ । କ୍ଷୁଧା ହୁଏ ନାହିଁ । ଏକ ପ୍ରକାର ଭୂତାଣୁ ସଂକ୍ରମଣ (Virus infection) ଯୋଗୁଁ ହୋଇଥାଏ । କାମଳ ରୋଗ ଯେପରି ଏକ ସହଜସାଧ୍ୟ ରୋଗ ତଦ୍ରୂପ ସ୍ଥଳ ବିଶେଷରେ ମଧ୍ୟ କଷ୍ଟସାଧ୍ୟ । ଏଣୁ ରୋଗ ପ୍ରାରମ୍ଭରେ ରୋଗର କାରଣ ନିର୍ଦ୍ଧାରଣ କରି ଆଶୁ ଚିକିତ୍ସା ଆରମ୍ଭ କରିବା ଆବଶ୍ୟକ । ଅନେକ ସମୟରେ ଏହି ରୋଗଟି ଅବରୋଧଜନ୍ୟ ହୋଇଥାଏ ବା ଗରମୟତାଯୋଗୁଁ ହୋଇଥାଏ ।

ଭୂତାଣୁ ସଂକ୍ରମଣ, ଘଣ୍ଟପଦ କୃମି (ରାଉଣ୍ଡଓ୍ୱାର୍ମ) ଅଭିବୃଦ୍ଧି । ଅଗ୍ନ୍ୟାଶୟରେ ଅର୍ବୁଦ ବା ପୈତ୍ତିକ ସିରୋସିସ୍ (ପିତ୍ତବାହିକା) ପ୍ରଣାଳୀର ସଙ୍କୋଚନ ବା କଠିନତାଜନ୍ୟ ଯୋଗୁଁ କାମଳ ଲକ୍ଷଣ ଦେଖାଦେଇଥାଏ । ଯଦି କୃମି ସଂକ୍ରମଣତା ଥାଏ, ତାହାହେଲେ ପିପାରିଡ଼ ହେଉଛି ସେ ସ୍ଥଳରେ ସଫଳ ଔଷଧ । ଯକୃତ୍ ସିରୋସିସ୍ ବା କ୍ୟାନସର ପାଇଁ ଏଠାରେ କୌଣସି ଅର୍ବୁଦର କଥା କୁହାଯାଉ ନାହିଁ ।

ଯେଉଁସବୁ ଔଷଧ ଯକୃତ୍‌ରେ ଗରମୟତା ସୃଷ୍ଟି କରେ ସେ ସବୁ ଔଷଧ ପ୍ରୟୋଗ ହେତୁ ଗରମୟତାଜନ୍ୟ କାମଳ ରୋଗ ହୋଇଥାଏ । ରୋଗର ହେତୁର ଚିକିତ୍ସା ସର୍ବାଦୌ କରଣୀୟ କାରଣ ଏହାଦ୍ୱାରା ଚିକିତ୍ସାର ଜଟିଳତାକୁ ଦୁରେଇ ହୁଏ । ଏହି ରୋଗରେ ପୂର୍ଣ୍ଣବୟସ୍କ ଲୋକ ପାଇଁ ଥରକୁ ଗୋଟିଏ ଲେଖାଏଁ କାଇନୋଟୋମିନ୍ ବଟିକା ଦିନକୁ ତିନିଥର ପ୍ରୟୋଗ କରିବା ବାଞ୍ଛନୀୟ । ଶିଶୁମାନଙ୍କର ବୟସ ଅନୁଯାୟୀ ଔଷଧର ମାତ୍ରା କମାଇବାକୁ ହେବ । ଏହି ଅବସ୍ଥାରେ ଶୋଇବା ସମୟରେ ହାର୍ବାଲବିଟସ୍ ଏକପାନ ଲେଖାଏଁ ଦେବାକୁ ହେବ । ଅନେକ ସମୟରେ ଏହି ରୋଗ ଦୂଷିତ ଜଳଯୋଗୁଁ ହୋଇଥାଏ । ଏଣୁ ସ୍ଥଳ ବିଶେଷରେ ମଧ୍ୟ କଳ ଜଳକୁ ନିର୍ଦୋଷ କୁହାଯାଇ ନ ପାରେ । ଏଣୁ କାମଳ ରୋଗୀକୁ ପାଣି ସିଝାଇ ଥଣ୍ଡା କରି ଦେବା ଆବଶ୍ୟକ । ଏହି ରୋଗର ପ୍ରତି ଅବସ୍ଥାରେ ଖଟାରସଯୁକ୍ତ ଫଳ ଦେବା ଆବଶ୍ୟକ । ଉକ୍ତ ଫଳ ଖାଇସାରି ଯଥେଷ୍ଟ ପାଣି ପିଇବା ପାଇଁ ଦେବା ହିତକର ।

ଲହୁଣୀକଢ଼ା ଦହି ବା ସର ନ ଥିବା ଦୁଧ ରୋଗୀକୁ ଆବଶ୍ୟକ ପରିମାଣରେ ଦିଆଯାଇପାରେ । ରୋଗର ଆରୋଗ୍ୟ ଅବସ୍ଥାରେ ଘୋଳଦହି ବା ଦୁଧ ସହିତ ଆଲବୋସାଙ୍ଗ ଦେଲେ ବିଶେଷ ଉପକାର ଦର୍ଶାଇଥାଏ । ରୋଗ ପୂର୍ଣ୍ଣ ରୂପେ ଆରୋଗ୍ୟ ନ ହେବା ପର୍ଯ୍ୟନ୍ତ ରୋଗୀକୁ ପୂର୍ଣ୍ଣ ବିଶ୍ରାମ ଓ ତୈଳ, ଘୃତ ବର୍ଜିତ ଖାଦ୍ୟ ଦେବା ଆବଶ୍ୟକ ।

ବସ୍ତିଶୂଳ—

ଏହି ରୋଗରେ କଟୀଦେଶରେ ତୀବ୍ର ବେଦନା ହୁଏ । ଏହି ବେଦନା କଟୀଦେଶରୁ ବସ୍ତି ଅଞ୍ଚଳ ମଧ୍ୟରେ ବିନ୍ଧିଲା ପରି ହୁଏ । ବୃକ୍କରେ ଅଶ୍ମରି ହୋଇଥିବା ହେତୁ ଅଶ୍ମରିର ମୂତ୍ରପଥ ଆଡ଼େ ଗତିହେତୁ ଯନ୍ତ୍ରଣା ହୁଏ । ଅଶ୍ମରିଗୁଡ଼ିକ ଛୋଟ ହୋଇଥିଲେ ମୂତ୍ର ପଥରେ କିଛି ଯନ୍ତ୍ରଣା ସୃଷ୍ଟି କରି ବାହାରକୁ ଚାଲିଆସେ । ବଡ଼ ହୋଇଥିଲେ ତାହା ମୂତ୍ରାଶୟରେ ରହିଯାଏ, ସମୟ ସମୟରେ ତାହା ଖଣ୍ଡିତ ହୋଇ ମୂତ୍ରପଥ ଦେଇ ଅତିକଷ୍ଟରେ ବାହାରି ଆସେ । ଏହି ଅବସ୍ଥା ଉପୁଜିବା ପୂର୍ବରୁ କଟୀଦେଶରେ ଶୂଳ ମାରିଲା ପରି ବେଦନା ହୁଏ । ଏହି ବେଦନା କିଛି ସମୟ ହୋଇ ବନ୍ଦ ହୋଇଯାଏ । ଏହିପରି ଅବସ୍ଥାରେ ଅଳ୍ପ ଅଳ୍ପ ପରିସ୍ରା ହୁଏ, ତହିଁରେ ରକ୍ତରେଖା ରହିଥାଏ

ଅଶ୍ମରି ଯେତେବେଳେ ମୂତ୍ରମାର୍ଗକୁ ଖସିଆସେ, ସେତେବେଳେ ଯନ୍ତ୍ରଣା ତୀବ୍ର ହୁଏ । ସମୟରେ କଣ କଣକ ପକ୍ଷରେ ଯନ୍ତ୍ରଣାଟା ଏବେ ତୀବ୍ର ହୁଏ, ଯଦ୍ୱାରା ରୋଗୀ ମୂର୍ଚ୍ଛା ହୋଇଯାଏ । ଅଶ୍ମରିଟି ମୂତ୍ରମାର୍ଗ ଦେଇ କୌଣସିମତେ ବାହାରି ଆସିଲେ ରୋଗୀ ଆଶ୍ୱସ୍ତି ଲାଭ କରେ ।

ରୋଗର ଉପଚାର—

ଏହି ଅବସ୍ଥାରେ ବେଦନାହାରକ ଔଷଧ ଯଥା—ବେଲାଡୋନା, ଏଟ୍ରୋପିନ୍ ମିଶ୍ରିତ କୌଣସି ଯୋଗ ପ୍ୟାଥିଡ୍ରିନ ସହିତ ପ୍ରୟୋଗ କରାଯାଇଥାଏ ।

ସାଧାରଣତଃ ପଥ୍ୟାପଥ୍ୟ ଦୋଷରୁ ଏହି ରୋଗ ହୋଇଥାଏ । ଏଣୁ ଏହି ରୋଗର ଚିକିତ୍ସାର ପ୍ରଥମ ସୋପାନ ହେଉଛି ରୋଗୀ ଖାଦ୍ୟ ପାନୀୟର ନିୟନ୍ତ୍ରଣ କରିବା । ପ୍ରଚୁର ପରିମାଣରେ ଖଟା ଫଳରସ, ଘୋଳଦହି ଚୂନପାଣି ସହିତ ପିଇଲେ ଅଶ୍ମରି ଜନ୍ମିବାର ପୁନଃ ସମ୍ଭାବନା ରହେ ନାହିଁ ଏବଂ ଅଶ୍ମରି ଜନ୍ମିଥିଲେ ମଧ୍ୟ ଏହି ପଥ୍ୟ ପ୍ରୟୋଗ ଦ୍ୱାରା ତାହା ଛୋଟ ଛୋଟ ହୋଇ ପରିସ୍ରାରେ ବାହାରି ଯାଇଥାଏ । ଏପରି ଅବସ୍ଥାରେ ଟୁରାଇକୋ ହେଉଛି ସୁନିର୍ବାଚିତ ଔଷଧ । ଏହାଦ୍ୱାରା ଏଲ୍‌ବୁମିନ୍ ମେହ ମଧ୍ୟ ଦୂର ହୋଇଥାଏ । ଯେତେବେଳେ ରୋଗୀର କଟୀଦେଶରେ ବେଦନା ଅନୁଭୂତ ହୁଏ, ସେ ସମୟରେ ହରମୋପାଉଓରିନ୍ ଓ ଟୁରାଇକୋ ଅଦଳବଦଳ କରି ପ୍ରୟୋଗ କରାଯାଇପାରେ । ବ୍ରୁବ୍‌ଜନ୍ ଏପରି ଅବସ୍ଥାରେ କଟୀରେ ମାଲିସ କଲେ ଯନ୍ତ୍ରଣା କିୟଦଂଶରେ ଲଘୁ ହୋଇଥାଏ ।

ମୁଖ ଜିହ୍ୱା ଦନ୍ତ ରୋଗ—

ସମୟ ସମୟରେ କଣ କଣକର ପାଟିରୁ ଗନ୍ଧ ବାହାରେ । ଏପରି ଗନ୍ଧ ବାହାରିବାର ମୁଖ୍ୟକାରଣ, ପେଟରେ ଖାଦ୍ୟ ଉତ୍ତମ ରୂପେ ହଜମ ହେଉ ନାହିଁ ବା ଦାନ୍ତ ଓ ଦାନ୍ତଦେଶକୁ ଯଥାର୍ଥ ପରିଷ୍କାର ପରିଚ୍ଛନ୍ନ ରଖାଯାଉ ନାହିଁ, ଅନେକ ଏପରି ଅବସ୍ଥାଟି ଦନ୍ତାର୍ଶ (ପାଇଓରିଆ) ବା ଶିଷଡାଦ ( Scurvy ) ବା ଭିଟାମିନ୍ "ସି"ର ଅଭାବଯୋଗୁଁ ଘଟିଥାଏ । ସମୟ ସମୟରେ ପେଟରେ ଅମ୍ଳରସର ଆଧିକ୍ୟ ହେତୁ ଜିଭ ଓ ଗଳାକ୍ଷତ ଦେଖା ଦେଇଥାଏ । ଏ ଜାତୀୟ କ୍ଷତ ଶିଶୁମାନଙ୍କର ହେଲେ ସେମାନଙ୍କୁ ମେଥିଲଏଡ୍, ଚିନି ସହିତ ମିଶାଇ ପ୍ରୟୋଗ କଲେ ସୁଫଳ ଦେଖାଇଥାଏ । ଅଜୀର୍ଣ୍ଣ ଅଗ୍ନିମାନ୍ଦ୍ୟ ପ୍ରଭୃତି କାରଣରୁ ପାଟିରୁ ଗନ୍ଧ ବାହାରୁଥିଲେ, ସାଇଫସ୍ ଓ ଷ୍ଟୋମକ୍‌ସ ପ୍ରୟୋଗ ଦ୍ୱାରା ତାହା ସହଜରେ ଦୂର ହୋଇଥାଏ । ଆମର ମେଡ଼ିକେଟେଡ଼ ଟୁଥ୍‌ପାଉଡ଼ର ପ୍ରତିଦିନ ବ୍ୟବହାର କଲେ, ଗଳାକ୍ଷତ, ଦନ୍ତମାଢ଼ି କ୍ଷତ ଓ ପାଇଓରିଆ ରୋଗକୁ ନିଶ୍ଚିତ ରୂପେ ଦୂର କରିଥାଏ । ଏହିପରି ଅବସ୍ଥାରେ ଅମ୍ଳରସ ପ୍ରଧାନ ଫଳରସ ଆଲବୋସାଙ୍ଗ ସହିତ ଖାଇଲେ ବିଶେଷ

ଉପକାର ମିଳିଥାଏ । ମଝିରେ ମଝିରେ ବିଶୋଧକ ମେଥିଲଏଡ୍ ବା ଅଗ୍ରୋପସ ବ୍ୟବହାର ମଧ୍ୟ ଏହା ଦୂର କରିବାରେ ସାହାଯ୍ୟ କରିଥାଏ ।

ଏହାଦ୍ୱାରା ଦାନ୍ତମୂଳର ଯନ୍ତ୍ରଣା, ପୂଜରକ୍ତ ପଡ଼ିବା କମିଯାଏ । ଦାନ୍ତମୂଳ ଫୁଲିଥିଲେ ମଧ୍ୟ ତାହା ଦୂର ହୋଇଥାଏ । କୌଣସି କାରଣରୁ ଏହି ରୋଗଟି ଜଟିଳ ହୋଇଥିବାର ଦେଖାଗଲେ ଦାନ୍ତ ବିଶେଷଜ୍ଞଙ୍କର ପରାମର୍ଶ ନେବା ଆବଶ୍ୟକ ।

ପାଇଓରିଆ—

ଏହି ରୋଗ ହେଲେ ଦାନ୍ତମାଢ଼ି ଫୁଲିଯାଏ । ଦାନ୍ତସନ୍ଧିରୁ ପୂଜ ଓ ରକ୍ତ ପଡ଼େ । ଦନ୍ତମୂଳ ହଲିଯାଏ, ଦାନ୍ତ ମଧ୍ୟ ବିବର୍ଣ୍ଣ ଦେଖାଯାଏ । ଏହି ସମୟରେ ପାଟିରୁ ଦୁର୍ଗନ୍ଧ ବାହାରେ, ଏଥିଯୋଗୁଁ ଖାଦ୍ୟକୁ ଭଲ କରି ଚୋବାଇ ହୁଏ ନାହିଁ । ଏଣୁ ପରିପାକ କ୍ରିୟାରେ ମଧ୍ୟ ବିଶୃଂଖଳା ଜନ୍ମେ । ସମୟ ସମୟରେ ଦାନ୍ତମୂଳର ପୂଜରକ୍ତ ପେଟ ଭିତରକୁ ଯାଇଁ ଶରୀରର ରକ୍ତ ପ୍ରବାହ ସଙ୍ଗରେ ମିଶିଯାଇ ନାନା ପ୍ରକାର ରୋଗ ସୃଷ୍ଟି କରିଥାଏ । ଆମର ମେଡ଼ିକେଟେଡ଼ ଦାନ୍ତଘଷା ପାଉଡ଼ର ବ୍ୟବହାର କରିବା ଦ୍ୱାରା ପାଇଓରିଆ ଆକ୍ରମଣର ପ୍ରତିଷେଧ କରେ । ଏହାକୁ ପ୍ରତିଦିନ ସକାଳେ ଓ ରାତିରେ ଶୋଇବା ସମୟରେ ବ୍ୟବହାର କରିବା ଆବଶ୍ୟକ । ଦାନ୍ତ ମୂଳର ମାଢ଼ିଗୁଡ଼ିକ ବିଶେଷ ଫୁଲିଥିଲେ ଏହି ପାଉଡ଼ର ମଧ୍ୟ ପ୍ରତିଥର ଖାଇବା ପରେ ଦାନ୍ତମୂଳରେ ଘଷିବା ଆବଶ୍ୟକ । ପାଇଓରିୟା ରୋଗର ପ୍ରାରମ୍ଭିକ ଅବସ୍ଥାରେ ଏଗ୍ରୋପସ ସୁଫଳ ଦେଖାଇଥାଏ । ଅବସ୍ଥାଟି ଜଟିଳ ହୋଇଥିଲେ ଦାନ୍ତଗୁଡ଼ିକ ଉପାଡ଼ିଦେବା ବ୍ୟତୀତ ଅନ୍ୟ ସହଜ ଉପାୟାନ୍ତର ନାହିଁ । ଏହି ରୋଗର ଚିକିତ୍ସା ପାଇଁ ରୋଗୀର ସାଧାରଣ ସ୍ୱାସ୍ଥ୍ୟ ଓ ପରିପାକ ପ୍ରକ୍ରିୟା ଯେପରି ଠିକ୍ ରହେ, ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ଦନ୍ତଶୂଳ ଓ ଦନ୍ତବେଷ୍ଟ ପ୍ରଦାହ—

କେବଳ ଡେସିଲ ବ୍ୟବହାର କରିବା ଦ୍ୱାରା ସମସ୍ତ ପ୍ରକାର ଦନ୍ତଶୂଳ ଦୂର ହୋଇଥାଏ । କାହାରି କାହାରି ଦାନ୍ତ ମାଢ଼ି ଫୁଲି ବା କୋଜିଆ ବାହାରି ବିଶେଷ ଯନ୍ତ୍ରଣା ଦେଇଥାଏ । ଏ ସ୍ଥଳରେ ଏଗ୍ରୋପସ୍ ପ୍ରୟୋଗ କଲେ ବିଶେଷ ସୁଫଳ ମିଳେ ।

ଯଦି ଉକ୍ତ ପ୍ରୟୋଗ ଦ୍ୱାରା ବେଦନା ସମ୍ପୂର୍ଣ୍ଣ ରୂପେ କମୁ ନାହିଁ, ସେ ସ୍ଥଳରେ ଭାଇଟାଲ ଏସେନ୍ସ ପ୍ରୟୋଗ କଲେ, ଏହା ଶାମକ କାମ କରିବା ସଙ୍ଗେ ସଙ୍ଗେ ବେଦନା ଶୀଘ୍ର ଦୂର କରିବାରେ ସହାୟକ ହୋଇଥାଏ । ଏହି ଅବସ୍ଥାରେ କୋଷ୍ଠ କାଠିନ୍ୟ ଥିଲେ, ସେ ସ୍ଥଳରେ ସୋଲକ୍ସ ପ୍ରୟୋଗ କରିବାକୁ ହେବ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ମେଡ଼ିକେଟେଡ଼ ଟୁଥ୍ ପାଉଡ଼ର ବ୍ୟବହାର କରିବା ଆବଶ୍ୟକ । ଏହି ଅବସ୍ଥାରେ ଭିଟାମିନ୍ 'ସି' ଖଟାରସଯୁକ୍ତ ଫଳ ନିୟମିତ ରୂପେ

ବ୍ୟବହାର କରିବା ହିତକର । ଯଦି ରୋଗର ପୀଡ଼ା ପ୍ରବଳ ହୋଇଥାଏ । ସେ ସ୍ଥଳରେ ଆଣ୍ଟିବାଇଓଟିକ୍ ଔଷଧ ପ୍ରୟୋଗ କଲେ ଯଥାଶୀଘ୍ର ବେଦନା ଶାନ୍ତ ହୋଇଥାଏ ।

ନାକ—

ନାକର ସର୍ଦି ସମୟ ସମୟରେ ନାନା ଜଟିଳ ରୋଗ ସୃଷ୍ଟି କରିଥାଏ । ନାକର ସ୍ରାବ ଘନ ହୋଇଗଲେ ବା ତଦ୍ୱାରା ନାସାର ପଥ ଅବରୁଦ୍ଧ ହେଲେ, ସ୍ଥଳବିଶେଷରେ ନାସାର୍ବୁଦ ବା ସାଇନୋସାଇଟିସ୍ ବା ନଳୀଘା ସୃଷ୍ଟି କରିଥାଏ । ଏହି ଅବସ୍ଥାରେ ଏଣ୍ଡ୍ରପସ୍ ଭଲ କାମ ଦେଖାଇଥାଏ । ଏଥିରୁ ତିନି ଗୋଟିବୁନ୍ଦା ଦିନକୁ ଦୁଇ ତିନିଥର ନାକରେ ପକାଇଲେ ରୋଗୀ ଯନ୍ତ୍ରଣାମୁକ୍ତ ହୋଇଥାଏ । ରୋଗୀର କୋଷ୍ଠବଦ୍ଧତା ଥିଲେ, ସୋଲକ୍ସ ପ୍ରୟୋଗ କରିବା ଆବଶ୍ୟକ ।

ଏହି ଅବସ୍ଥାରେ ଶ୍ୱାସ ପ୍ରଶ୍ୱାସ ନେବା, ବ୍ୟାୟାମ ସକାଳେ ଓ ସନ୍ଧ୍ୟାରେ ପାଞ୍ଚ ଦଶ ମିନିଟ ପର୍ଯ୍ୟନ୍ତ କରିବା ବିଶେଷ ଉପକାର ଏବଂ ଯଥାଯଥ ପଥ୍ୟାପଥ୍ୟ ବିଧାନ ପ୍ରତି ଧ୍ୟାନ ଦେବା ପ୍ରୟୋଜନ ।

ଅର୍ଶ—

ଅର୍ଶ ରୋଗର ଚିକିତ୍ସା କରିବା ପୂର୍ବରୁ ଅର୍ଶ ଓ ଗୁଦବିଦର (Fissure) ମଧ୍ୟରେ ସ୍ୱାତନ୍ତ୍ର୍ୟ ବୁଝି ଚିକିତ୍ସା କାର୍ଯ୍ୟରେ ପ୍ରବୃତ୍ତ ହେବା ଆବଶ୍ୟକ । ମଳତ୍ୟାଗର ଅନିୟମିତତା, କୋଷ୍ଠକାଠିନ୍ୟ, ଅଳ୍ପପାଣି ପିଇବା, ମଳତ୍ୟାଗ ସମୟରେ ବିଶେଷ କୁନ୍ଥେଇବା, ଗୁଦମାର୍ଗରେ କୌଣସି ଅଭିବୃଦ୍ଧି ହେତୁ ଅର୍ଶ ଲକ୍ଷଣ ଦେଖାଯାଇଥାଏ । ଏହି ସବୁ କାରଣ ଅର୍ଶ ରୋଗ ହେବାର ସମ୍ଭାବନା ସଙ୍ଗେ ମଳତ୍ୟାଗ ସମୟରେ ପ୍ରଚୁର ରକ୍ତସ୍ରାବ ହୋଇଥାଏ । କାରଣ ମଳତ୍ୟାଗର ଚାପ ହେତୁ ଶିରାସ୍ଫୀତିଯୋଗୁଁ କ୍ଷତ ହୋଇ ରକ୍ତସ୍ରାବ ହୋଇଥାଏ ।

ଆଭ୍ୟନ୍ତରୀଣ ଅର୍ଶ ରୋଗରେ ମଳଦ୍ୱାର ଭିତରେ ବଳି ହୋଇଥାଏ । ଏହି ବଳିଗୁଡ଼ିକ ଫୁଲିବା ଆରମ୍ଭ କରିଥିଲେ ଦେହ ଭାରି ଭାରି ଲାଗେ । ମଳ ଆସିବାରେ କଷ୍ଟ ହୁଏ । ଏହି ବଳିରୁ ସମୟ ସମୟରେ ରକ୍ତସ୍ରାବ ହୁଏ । କୌଣସି କୌଣସି ସ୍ଥଳରେ ରୋଗୀର ଅତ୍ୟଧିକ ରକ୍ତସ୍ରାବ ହେଲେ ରୋଗୀ ରକ୍ତହୀନତାଗ୍ରସ୍ତ ହୋଇପଡ଼େ ।

ବହିର୍ବଳିଯୁକ୍ତ ଅର୍ଶ—

ଏ ଜାତୀୟ ଅର୍ଶ ରୋଗରେ ମଳଦ୍ୱାରର ବାହାରେ ବାହାରିଥିବା ବଳିଗୁଡ଼ିକ ସମୟ ସମୟରେ ଫୁଲିଉଠେ, ସେତେବେଳେ ଖୁବ୍ ଯନ୍ତ୍ରଣା ହୁଏ । ସେହିପରି ଅବସ୍ଥାରେ ଶଲ୍ୟ ଚିକିତ୍ସା ଓ ଆଣ୍ଟିବାଇଓଟିକ ଔଷଧ ପ୍ରୟୋଗ ଏକାନ୍ତ ଆବଶ୍ୟକ । ଏହି ରୋଗର ଚିକିତ୍ସାରେ କେବଳ ରକ୍ତରୋଧ ବିଶେଷ କଥା ନହେଁ । ପ୍ରାରମ୍ଭିକ

ଅବସ୍ଥାରେ ମଳତ୍ୟାଗର ଅଭ୍ୟାସକୁ ନିୟମିତ କରିବା ଓ କୋଷ୍ଠକାଠିନ୍ୟ ଦୋଷକୁ ଦୂର କଲେ ବିଶେଷ ଉପକାର ମିଳେ । ରୋଗର ପ୍ରାରମ୍ଭ ଅବସ୍ଥାରେ ସୋଲ୍‌କ୍‌ସ ବ୍ୟବହାର କରିବା ଦ୍ୱାରା କୋଷ୍ଠଶୁଦ୍ଧି ହୋଇଥାଏ । ଏହି ଅବସ୍ଥାରେ କୌଣସି ଉତ୍ତେଜକ ବିରେଚକ ଔଷଧ ପ୍ରୟୋଗ କରିବା ଅନୁଚିତ । ଏହି ରୋଗ ଯୋଗୁଁ ରକ୍ତ ପଡ଼ୁଥିଲେ, ଦିନକୁ ଦୁଇଥର ଚିନିୟମ କୋ ପ୍ରୟୋଗ କରିବା ଆବଶ୍ୟକ । ଶୋଇବା ସମୟରେ ବା ମଳତ୍ୟାଗ କରିବା ପରେ ରିପାଣ୍ଡୋମଲମକୁ ମଳଦ୍ୱାର ଭିତରେ ଲଗାଇ ଦେବା ଆବଶ୍ୟକ । ଏହାର ପ୍ରୟୋଗ ଦ୍ୱାରା ଅର୍ଶର ଯନ୍ତ୍ରଣା କମିଯାଏ ଓ ରକ୍ତସ୍ରାବ ବନ୍ଦ ହୋଇ ଯାଇଥାଏ ।

ବିଦର ଅର୍ଥ ଫାଟି ଫାଟିଯିବା, ମଳଦ୍ୱାର ଭିତରେ ଏପରି ଅବସ୍ଥା ଉପୁଜିଲେ ତାକୁ ଗୁଦବିଦର କୁହାଯାଏ । ଏହିପରି ଅବସ୍ଥାରେ ରୋଗୀର ମଳଶୁଦ୍ଧି ପ୍ରତି ଧ୍ୟାନ ଦେବାକୁ ପଡ଼ିବ—ମାତ୍ର କୌଣସି ଅବସ୍ଥାରେ କଡ଼ା ବିରେଚକ ଔଷଧ ପ୍ରୟୋଗ କରିବା ଅନୁଚିତ । କୋଷ୍ଠଶୁଦ୍ଧି ପାଇଁ କେବଳ ଲିକ୍ୱୁଇଡ଼ ପାରାଫିନ ବା ଅଲିଭ୍ ଅଏଲ ପ୍ରୟୋଗ କରାଯାଇପାରେ । ମଳଦ୍ୱାର ଭିତରେ ଦିନକୁ ଦୁଇଥର ରିପାଣ୍ଡୋ ପ୍ରୟୋଗ ଦ୍ୱାରା ରକ୍ତସ୍ରାବ ଯଥାଶୀଘ୍ର ବନ୍ଦ ହୋଇଥାଏ ।

### ଗୁଦଭ୍ରଂଶ (Prolapsus ani)—

ଏହା ସାଧାରଣତଃ ପୁଷ୍ଟିବିପାକ ରୋଗପୀଡ଼ିତ ଶିଶୁମାନେ ଅତିସାର ଗ୍ରହଣୀ ରୋଗ ଭୋଗିବା ପରେ ଏହି ରୋଗରେ ପଡ଼ିଥାନ୍ତି ।

କୌଣସି ସମୟରେ ଗୁଦଭ୍ରଂଶ ହୋଇଥିଲେ ଆଙ୍ଗୁଳିକୁ ପରିଷ୍କାର କରି ମୃଦୁ ଚାପ ଦେଇ ତାହା ଭିତରକୁ ପୂରାଇ ଦେବାକୁ ହେବ । ମଳତ୍ୟାଗ ପରେ ବା ଶୋଇବା ସମୟରେ ରିପାଣ୍ଡୋ ମଳଦ୍ୱାରର ଭିତରେ ବା ବାହାରେ ଧୀରେ ଧୀରେ ମାଲିସ୍ କଲେ ଯଥେଷ୍ଟ ଉପକାର ମିଳେ ।

### ମୁଖ ବ୍ରଣ—

ଏହି ପୀଡ଼ା ଦେଖା ଦେଲେ ରସଜେଣ୍ଟ ଦୁଇସପ୍ତାହ ପର୍ଯ୍ୟନ୍ତ ପ୍ରୟୋଗ କରିବା ଆବଶ୍ୟକ । ଏଥିରୁ ଗୋଟିଏ ଲେଖାଏଁ ଗ୍ରେନ ସକାଳେ ଓ ସନ୍ଧ୍ୟାକାଳୀନ ଭୋଜନ ପରେ ସେବନ କରିବାର କଥା ।

### ବଥ—

ବଥ ରୋଗରେ ରସ୍‌ଜେଣ୍ଟ ସଙ୍ଗେ ଆଲବୋସାଙ୍ଗ ଓ ଭୋଜନ ପରେ ହିମୋ-ପ୍ଲେକ୍‌ସ ପ୍ରୟୋଗ କଲେ ବିଶେଷ ସୁଫଳ ମିଳିଥାଏ । ଯେତେବେଳେ ବଥଗୁଡ଼ିକ ଫାଟିଯାଏ ରିପାଣ୍ଡୋକୁ ହିଲନ୍‌ସହ ମିଶାଇ କ୍ଷତରୋପଣ (ଡ୍ରେସିଂ) କରିବାକୁ ହୋଇଥାଏ । ବଥ ଓ ବ୍ରଣର ଉଗ୍ର ଆକ୍ରମଣ ଅବସ୍ଥାରେ ସଲଫାସିନ୍ ଇଞ୍ଜେକସନ

ଦିଆଯାଇପାରେ । ଯଦି ମୁଖବ୍ରଣରେ ବାରମ୍ବାର କୀଟକ ହେଉଥାଏ, ସେ ସ୍ଥଳରେ ରୋଗୀର ପଥ୍ୟକୁ ନିୟନ୍ତ୍ରଣ କରିବାକୁ ହେବ । ଚର୍ବିଜାତୀୟ ଖାଦ୍ୟ ସର୍ବତୋଭାବେ ବର୍ଜନ କରିବାକୁ ହେବ । ଖଟା ଫଳରସ, ଘୋଳଦହି, କାଗଜିଲେମ୍ବୁର ରସ ପ୍ରତିଦିନ ଖାଇବା ପାଇଁ ପରାମର୍ଶ ଦେବାକୁ ହେବ ଏବଂ ରୋଗୀ ଯେପରି ପ୍ରତିଦିନ ମୃଦୁ ବ୍ୟାୟାମ କରେ ସେଥିପ୍ରତି ଧ୍ୟାନ ଦେବାକୁ ହେବ ।

### ଆମବାତ ଜ୍ୱର ଓ ଆମବାତ ପୀଡ଼ା—

ଏହି ରୋଗର ପ୍ରାରମ୍ଭିକ ଅବସ୍ଥାରେ ଗଣ୍ଠିମାନଙ୍କରେ ଫୁଲାବେଦନା ହୁଏ । ଜ୍ୱର ଜ୍ୱର ଭାବରହେ, କାହାରି କାହାରି ତୀବ୍ର ଜର ରହେ, କେତେକଙ୍କର ହୃତପିଣ୍ଡରେ ମଧ୍ୟ ବିଶୃଂଖଳା ଦେଖାଦେଇଥାଏ ।

ଏହି ରୋଗରେ ଏକ ବୈଚିତ୍ର୍ୟ ହେଉଛି, ରୋଗୀର ଗଳାରେ ସଂକ୍ରମଣ ଦେଖାଯାଏ ଓ ମଣ୍ଡିଅଣ୍ଠୁରେ ଫୁଲା, ପୀଡ଼ା, ଦାହ, ଯନ୍ତ୍ରଣା ଦେଖାଦେଇଥାଏ । ଆସ୍ତେ ଆସ୍ତେ ଅନ୍ୟ ବଡ଼ ଗଣ୍ଠିଗୁଡ଼ିକ ମଧ୍ୟ ଆକ୍ରାନ୍ତ ହୋଇଥାଏ । ଏହି ରୋଗରେ ପୂତିକାରକ ଜୀବାଣୁ ସଂକ୍ରମଣ ପ୍ରତି ଯଥାଯଥ ଧ୍ୟାନଦେବାକୁ ପଡ଼ିବ—ଆବଶ୍ୟକ ସ୍ଥଳେ ଜୀବାଣୁରୋଧୀ ଚିକିତ୍ସା କରିବାକୁ ହେବ ।

ଏହି ରୋଗର ଲକ୍ଷଣିକ ଚିକିତ୍ସା କରିବାକୁ ହେଲେ ଏଥିପାଇଁ ଡେସିଲ ଓ ହରମୋପାଇରିନ୍ ହେଉଛି ଉତ୍କୃଷ୍ଟ ଔଷଧ । ଏହାଦ୍ୱାରା ଜ୍ୱର ଓ ଗଣ୍ଠିର ଦରଜ ଓ ଫୁଲା କମିଯାଏ । କିନ୍ତୁ ରୋଗର ଚିକିତ୍ସା ପାଇଁ ଫେନୋକାଲସିନ ନିୟମିତଭାବେ ପ୍ରୟୋଗ କରିବାକୁ ପଡ଼ିବ । ଡେସଲ ଓ ରୁବ୍ଜନକୁ ବାହ୍ୟିକ ପ୍ରୟୋଗ ଭାବରେ ବ୍ୟବହାର କରି ଯଦି ଆଇଓଡିନ୍ ଓ ମେଥିଲଏଡ଼କୁ ମିଶ୍ରିତ ଭାବରେ ଦିଆଯାଏ ତାହାହେଲେ ତାହା ଏକ ଯୋଗବାହୀ ଗୁଣ ଦେଖାଇଥାଏ । ଏହି ରୋଗରେ ଫୁଲା ଦରଜକୁ ଶୀଘ୍ର କମାଇବାକୁ ହୋଇଥାଏ । ଏଣୁ ଉପରୋକ୍ତ ମତେ ଔଷଧ ପ୍ରୟୋଗ କଲେ ବିଶେଷ ଫଳଦାୟକ ହୋଇଥାଏ ।

ଏହି ରୋଗର ଚିକିତ୍ସା କରିବା ସମୟରେ ରୋଗୀର କ୍ଷୁଧା ଓ ମଳମୂତ୍ର ନିଷ୍କାସନ ଠିକ୍‌ଭାବେ ହେଉଛି କି ନାହିଁ, ତାହା ଦେଖିବା ଚିକିତ୍ସକର ପ୍ରଧାନ କର୍ତ୍ତବ୍ୟ ।

ଏହିପରି ଅବସ୍ଥାରେ ଗିମୋରିନ୍ ଏକ ଏମ୍. ଏଲ୍. ଚବିଶ ଘଣ୍ଟା ଅନ୍ତରରେ ଥରେ ଲେଖାଏଁ ଚର୍ମତଳେ ଦେଉଥିଲେ ବିଶେଷ ଉପକାର ମିଳିଥାଏ ।

### ଗୃଧ୍ରସୀ (ସାଇଟିକା)—

ଗୃଧ୍ରସୀ ସ୍ନାୟୁର କ୍ଷତି ଯୋଗୁଁ ଏହି ରୋଗ ଆରମ୍ଭ ହୋଇଥାଏ । ଏହି କ୍ଷତି ନିଜ କାରଣରୁ ବା ପାରିପାର୍ଶ୍ୱିକ କାରଣରୁ ହୁଏ । ଏହି ରୋଗର ଚିକିତ୍ସା କରିବାକୁ ହେଲେ, ଏହାର ମୂଳ କାରଣ ଅନୁସନ୍ଧାନ କରି ଚିକିତ୍ସା କାର୍ଯ୍ୟରେ ପ୍ରବୃତ୍ତ ହେବା ଆବଶ୍ୟକ । ଏହି ରୋଗରେ ସ୍ପର୍ଶ ପୀଡ଼ା ନ ଥିଲେ ଲକ୍ଷଣର ଉପଶମପାଇଁ

ଡେସିଲ ପ୍ରୟୋଗ କରାଯାଇପାରେ । ବାହାରେ ଲୁବ୍‌ଜନ ଧୀରେ ଧୀରେ ମାଲିସ୍ କରି ସେକଦେଲେ ପୀଡ଼ା ଶାନ୍ତ ହୋଇଥାଏ । ରୋଗୀ ସୁସୁପ୍ତିପାଇଁ ଗାଇଟାର ଏସେନ୍‌ସ ରାତିରେ ପ୍ରୟୋଗ କରାଯାଇପାରେ ।

କଟୀଶୂଳ (ଲମ୍ବାଗୋ)—

ରୋଗୀର କଟୀ ଅଞ୍ଚଳରେ ହେଉଥିବା ଶୂଳ ବେଦନାକୁ କଟୀଶୂଳ କୁହାଯାଏ । ଏହି ଶୂଳ ବହିଃମାଂସପେଶୀ ବା ମେରୁମଜ୍ଜାର ସ୍ନାୟୁ ଯୋଗୁ ହୋଇପାରେ । ପେଶୀଶୂଳ କ୍ଷେତ୍ରରେ ଡେସିଲ ପ୍ରୟୋଗ କଲେ ବିଶେଷ ସୁଫଳ ମିଳେ । କିନ୍ତୁ ଏ ସ୍ଥଳରେ ମନେରଖିବାକୁ ହେବ—ପେଶୀଶୂଳର କାରଣ ନ ଜାଣି ଚିକିତ୍ସା କଲେ ଚିକିତ୍ସାର ଫଳ ସ୍ଥାୟୀ ହୁଏ ନାହିଁ । ସାଧାରଣ ପେଶୀ ଶୂଳ ସ୍ଥଳରେ ବାହାରେ ମାଲିସ୍ କରିବାପାଇଁ ଲୁବ୍‌ଜନ ଓ ଡେସିଲ ବ୍ୟବହାର କଲେ ଉତ୍ତମ ଫଳ ମିଳିଥାଏ ।

ଗଳକ୍ଷତ—

ଏଠାରେ ଗଳକ୍ଷତ ଶ୍ରେଣୀରେ ଶ୍ୱସନୀ ପ୍ରଦାହ (Pharyngitis)କୁ ମଧ୍ୟ ଗ୍ରହଣ କରାଯାଇଅଛି । ଗଳା ଭିତରେ ଫୁଲା, ଦାହ, ସଂକୋଚ ପ୍ରଭୃତି ଲକ୍ଷଣ ଦେଖାଗଲେ, ଏଣ୍ଟ୍ରାସ ବା ମେଥିଲଏଡ଼କୁ ଗଳଧୌତି (ଗାରଗଲ) ପାଇଁ ବ୍ୟବହାର କରାଯାଇପାରେ । ଏହି ଔଷଧକୁ ଥରକେ ଚାମଚେ ଲେଖାଏଁ ଦିନକୁ ଦୁଇ ତିନିଥର ବ୍ୟବହାର କରାଯାଇପାରେ ।

ଏହି ଅବସ୍ଥାରେ ଆଭ୍ୟନ୍ତରୀଣ ପ୍ରୟୋଗ ପାଇଁ ଡେସିଲ ବା ଫୁରେନ ପ୍ରୟୋଗ କରାଯାଇଥାଏ ।

ତୁଣ୍ଡିକେରି (ଟନ୍‌ସିଲାଇଟିସ୍)—

ଏହା ଶିଶୁମାନଙ୍କର ଏକ ସାଧାରଣ ରୋଗ । ଏହାଦ୍ୱାରା ଗଳା ଭିତର ଫୁଲିଯାଏ । କୌଣସି ଜିନିଷ ଗିଳିବାକୁ କଷ୍ଟ ହୁଏ । ଏ ଅବସ୍ଥାରେ ଉତ୍ତାପ ବଢ଼ିପାରେ । ପାଟିରୁ ଖରାପ ଗନ୍ଧ ବାହାରିଥାଏ । ଗଳାର ତୁଣ୍ଡିକାଗୁଡ଼ିକ (Tonsiltis ) ଫୁଲିଯାଇଥାଏ । ପାଟି ଖୋଲିବା ମଧ୍ୟ କଷ୍ଟପ୍ରଦ ହୋଇଥାଏ । ଏହି ଅବସ୍ଥାରେ ଫେନୋକାଲସିନ୍ କିମ୍ବା ଡେସିଲ ହେଉଛି ସୁନିର୍ବାଚିତ ଔଷଧ । ଦିନ ଭିତରେ ଏହି ବଟିକା ଦୁଇ ତିନିଥର ବ୍ୟବହାର କରାଯାଇପାରେ । ହିମୋପ୍ଲେକ୍‌ସ ମଧ୍ୟ ପ୍ରୟୋଗ କରାଯାଇପାରେ । ଏଣ୍ଟ୍ରପସ୍ ବା ମେଥିଲଏଡ଼କୁ ଗଳାଧୌତି ପାଇଁ ବ୍ୟବହାର କରାଯାଇପାରେ । ଗଳାର ଉପରିଭାଗରେ ଲୁବ୍‌ଜୋନ ମାଲିସ କଲେ ବିଶେଷ ଫଳ ମିଳେ । ଏ ଅବସ୍ଥାରେ ତୁଣ୍ଡିକେରି ବୃଦ୍ଧି ସହିତ ଜ୍ୱର ଥିଲେ ଫେନୋକାଲସିନ୍ ପ୍ରୟୋଗ କରିବା ବାଞ୍ଛନୀୟ । ପୂଜକାରକ ଜୀବାଣୁ ନାଶପାଇଁ ଏଥି ସହିତ ଆଣ୍ଟିବାଇଓଟିକ ଔଷଧ ପ୍ରୟୋଗ କରାଯାଇପାରେ । ଏହି ସମସ୍ତ ଚିକିତ୍ସାଦ୍ୱାରା ରୋଗର ପୀଡ଼ା

ଧୀରେ ଧୀରେ ଦୂର ହୋଇଥାଏ । ରୋଗର ଉଗ୍ର ଅବସ୍ଥା କମିଗଲେ ଆଲବୋସାଙ୍କ ସାଧାରଣ ସ୍ୱାସ୍ଥ୍ୟ ବୃଦ୍ଧି ପାଇଁ ପ୍ରୟୋଗ କରାଯାଇପାରେ ।

### ମୂତ୍ର ପ୍ରଜନନ ପ୍ରକ୍ରିୟାର ବିଗ୍ରହ–

ମଝିରେ ମଝିରେ ପରିସ୍ରାର ବେଗ ଦେଖାଇବା ଲକ୍ଷଣ କେତେକଙ୍କଠାରେ ଦେଖାଯାଇଥାଏ । ଏହା ଅଧିକାଂଶ ସମୟରେ ସ୍ନାୟବିକ ଦୁର୍ବଳତା ବଶତଃ ଦେଖାଯାଇଥାଏ । ଏପରି ଅବସ୍ଥାରେ ନେଭସ ହେଉଛି ଉତ୍କୃଷ୍ଟ ଔଷଧ ।

ବେଶି ପରିମାଣରେ ତଥା ବହୁଥର ପରିସ୍ରା ହୋଇପାରେ । ଏହା ବିଶେଷତଃ ମଧୁମେହ ହେତୁ ହୋଇଥାଏ । ଏ ଅବସ୍ଥା ପାଇଁ ମରସିନା ହେଉଛି ସୁନିର୍ବାଚିତ ଔଷଧ ।

ଶୁକ୍ରମେହ ସ୍ଥଳରେ ସେନଜିନ୍‌ର ପ୍ରୟୋଗ ଏକ ଫଳପ୍ରଦ ଔଷଧ । ଯଦି କୌଣସି ମୂତ୍ରାବରୋଧ ଦେଖାଯାଇଥାଏ, ସେ ସ୍ଥଳରେ ଟିନିୟମ୍ କୋ ଏବଂ ଟ୍ରାଇକୋକୁ ଅଦଳବଦଳ କରି ଦିଆଯାଇଥାଏ । କୋଷ୍ଠକାଠିନ୍ୟ ଥିଲେ ସୋଲାକ୍ସ ପ୍ରୟୋଗ କରିବାକୁ ହେବ । ସାଧାରଣ ସ୍ୱାସ୍ଥ୍ୟର ଅଭିବୃଦ୍ଧି ପାଇଁ ଆଲବୋସାଙ୍କ ଦିଆଯାଇପାରେ । ମୂତ୍ରନଳୀରେ କୌଣସି ଗ୍ରନ୍ଥିକ ଅଭିବୃଦ୍ଧି ଘଟିଥାଇ ମୂତ୍ରରୋଧ କରୁଥାଏ, ସେ ସ୍ଥଳରେ କୌଣସି ମୂତ୍ରକାରକ ଔଷଧ ପ୍ରୟୋଗ କରିବା ଅନୁଚିତ । ସେ କ୍ଷେତ୍ରରେ ଶଲ୍ୟ ଚିକିତ୍ସା କରାଇବା ଆବଶ୍ୟକ ।

### ଶଯ୍ୟାମୂତ୍ର–

ଅନେକ ଶିଶୁଙ୍କର ଏହି ସାଧାରଣ ରୋଗ ଥାଏ । ଏପରି କି ବୟସ ବଢ଼ିଲେ ମଧ୍ୟ ବିଛଣାରେ ମୂତ୍ରତ୍ୟାଗ କରିବା ଅଭ୍ୟାସ କମିଯାଏ ନାହିଁ । ସାଧାରଣତଃ ସ୍ନାୟବିକ ଦୁର୍ବଳତା ଯୋଗୁଁ ଏହି ଲକ୍ଷଣ ଦେଖାଯାଇଥାଏ । ଏପରିସ୍ଥଳରେ ଭାଇଟାଲ ଏସେନ୍ସ ସକାଳେ ଥରେ ଓ ସନ୍ଧ୍ୟାରେ ଥରେ ଏବଂ ଶୋଇବା ପୂର୍ବରୁ ନେଭସ୍ ପ୍ରୟୋଗ କଲେ ବିଶେଷ ସୁଫଳ ମିଳିଥାଏ ।

ଶୋଇବା ତିନିଘଣ୍ଟା ପୂର୍ବରୁ ପିଲାକୁ ଖାଇବାକୁ ଦିଆଯିବା ଆବଶ୍ୟକ । ଶୋଇବା ପୂର୍ବରୁ ପିଲାକୁ ମୂତାଇନେବା ଏକାନ୍ତ କାମ୍ୟ । ପିଲମାନଙ୍କୁ ଯଥାର୍ଥ ସ୍ନେହ ଶ୍ରଦ୍ଧା ଦେଖାଇ ଭୟହୀନ କରାଇବାକୁ ହେବ ।

### ଅଧାକପାଳି–

ସମୟ ସମୟରେ ଏହି ଅଧାକପାଳି ବିନ୍ଧା ଅତି ଅସହ୍ୟ ହୋଇଥାଏ । ଏହାର ଯନ୍ତ୍ରଣା ଏତେ ଅଧିକ ହୁଏ ଯେ, ସେ ସମୟରେ କପାଳକୁ ଛୁଇଁ ହୁଏ ନାହିଁ । ଏହା ସମୟ ସମୟରେ ସାଇନୋସାଇଟିସ୍ ଯୋଗୁଁ ହୋଇଥାଏ । ଏହିପରି ଅବସ୍ଥାରେ ତେସିଲ ଦିନକୁ ତିନିଥର ଥରକୁ ଦୁଇଟି ଲେଖାଏଁ ବଟିକା ଖାଇଲେ ବିଶେଷ

ଉପକାର ଦେଖାଇଥାଏ । ଭାଇଟାଲ୍ ଏସେନ୍ସ ଓ ଫେନୋକାଲର୍ସିନ୍ ମଝିରେ ମଝିରେ ଦେଲେ ସାମୟିକ ଶାନ୍ତି ମିଳିଥାଏ । ରୋଗର ଯନ୍ତ୍ରଣା ଉଗ୍ର ହେଉଥିଲେ, ରୋଗୀକୁ ଗୋଟିଏ ଅନ୍ଧାରିଆ ଘରେ ରହିବାକୁ ଦେବ । ପ୍ରତିଦିନ ଯେପରି ଝାଡ଼ା ସଫା ହୁଏ, ସେଥିପ୍ରତି ଧ୍ୟାନ ଦେବାକୁ ହେବ । ଯେଉଁ କାମ କଲେ ଶାରୀରିକ ଓ ମାନସିକ ଶାନ୍ତି ହେବ—ତାହା କରିବା ମନା ।

ଏହି ଅବସ୍ଥାରେ ଲଘୁ ପଥ୍ୟ ଦେବା ଆବଶ୍ୟକ । ଯେଉଁ ଖାଦ୍ୟରେ ବିଶେଷ ପରିମାଣରେ ତେଲ ମସଲା ଥାଏ ତାହା ଅପଥ୍ୟ । ରୋଗୀର ନିଦ ହେଉ ନ ଥିଲେ, ଭାଇଟାଲ ଏସେନ୍ସ ପ୍ରୟୋଗ କଲେ ରୋଗୀର ସୁନିଦ୍ରା ହୋଇଥାଏ । ରୋଗର ଆକ୍ରମଣ ଅବସ୍ଥାରେ ଭାଇଟାଲ ଏସେନ୍ସ ଏବଂ ଗ୍ୟାଷ୍ଟ୍ରୋମୋନି (ଏଥିରୁ ଗୋଟିଏ ବଟିକା, ସେଥିରୁ ଗୋଟିଏ ବଟିକା) ଦିନକୁ ତିନିଥର ପ୍ରୟୋଗ କରିବାକୁ ହେବ । ପ୍ରତିଦିନ ହାରବାଲବିଟରସ (ହାବିଟାରସ୍) ବ୍ୟବହାର କରୁଥିଲେ ରୋଗ ଆକ୍ରମଣର ବ୍ୟବଧାନ କମିଯାଏ । ଏ ଅବସ୍ଥାରେ ନର୍ଭୋପ୍ଲେକ୍ସ ଇଞ୍ଜେକ୍ସନ ଉପକାରକ ହୋଇଥାଏ । ଦୃଷ୍ଟିଶକ୍ତିର କୌଣସି ଦୋଷ ଥିଲେ—ଆବଶ୍ୟକୀୟ ଚଷମା ବ୍ୟବହାର କରିବା ଆବଶ୍ୟକ । ସାଇନୋ ସାଇଟିସ୍ ଥିଲେ, ପ୍ରତିଦିନ ଆଣ୍ଡମ୍‌ଦ୍ୱାରା ଧୋଇଦେବା ହିତକର ।

## ରୋଗ ଓ ଔଷଧର ବର୍ଗୀକରଣ ଓ ଚିକିତ୍ସା କ୍ରମ—

୧ । ବର୍ଗୀକରଣ

ରୋଗଗୁଡ଼ିକୁ ନିମ୍ନକ୍ରମରେ ବର୍ଗୀକରଣ କରାଯାଇପାରେ ।

(କ) କ୍ରିୟାଗତ ବିକାର :

ଏହି ସମସ୍ତ ରୋଗର ଚିକିତ୍ସା ପାଇଁ—ପ୍ରଶାନ୍ତକ ଔଷଧ ଓ ଚିକିତ୍ସକଙ୍କ ଦ୍ୱାରା ଯଥାର୍ଥ ଆଶ୍ୱାସନା, ପ୍ରେରଣା ।

(ଖ) ଅଙ୍ଗ ଗଠନଗତ ରୋଗ :

ଏହି ରୋଗଗୁଡ଼ିକ ଶରୀରର ଆଭ୍ୟନ୍ତରୀଣ କ୍ରତୁ ( Organ ) ଗୁଡ଼ିକ କୌଣସି ମତେ ସମ୍ପୃକ୍ତ ଥାନ୍ତି ଯଥା ବୃକ୍କ, ଯକୃତ୍, ଇତ୍ୟାଦି । ଏହି ସବୁ କ୍ରତୁଗୁଡ଼ିକର ପ୍ରକ୍ରିୟାଗତ ବିକୃତି ହୋଇଥାଏ । ଔଷଧ ପ୍ରୟୋଗ ଦ୍ୱାରା ସେମାନଙ୍କୁ ଯଥାର୍ଥ କାର୍ଯ୍ୟକ୍ଷମ କରାଯାଇ ଥାଏ ।

୨ । ରୋଗଗୁଡ଼ିକର ଶ୍ରେଣୀ ବିଭାଗ

(କ) ରୋଗର ଉଗ୍ରାବସ୍ଥା (ଅର୍ଥାତ୍ ରୋଗ ଯେଉଁ ସମୟରେ ସାଂଘାତିକ ହୋଇଥାଏ ।)
ଉଦାହରଣ—ଖଣ୍ଡକ ଫୁସ୍‌ଫୁସ ପ୍ରଦାହ (LobarPneumonia) ଉଗ୍ର ଅତିସାର । ଏପରି ଅବସ୍ଥାରେ ଆଶୁ ଚିକିତ୍ସା ନ କଲେ ରୋଗୀ ସଂକଟାପନ୍ନ ଅବସ୍ଥାର ସମ୍ମୁଖୀନ ହୁଏ ।

(ଖ) ଚିରକାରୀ ରୋଗ—ଏଗୁଡ଼ିକ ହଠାତ୍ ପ୍ରାଣନାଶକ ନୁହନ୍ତି, ଏ ରୋଗଗୁଡ଼ିକ ଦୀର୍ଘକାଳଧରି ରହିଥାନ୍ତି । ଏମାନଙ୍କ ସହ ଆନୁସଙ୍ଗିକ ଉପଦ୍ରବ ରହିପାରେ ବା ନ ପାରେ । ଯଥା ଗରମି (ସିଫିଲିସ୍) ଏହା ସ୍ନାୟୁ ବିକାର ସହିତ ବା ରହିତ ହୋଇପାରେ ।

୩ । (କ) ଜନ୍ମଗତ ରୋଗ—ଯେଉଁ ସମସ୍ତ ସହଜାତ ରୋଗ ସହିତ ଲୋକ ଜନ୍ମ ନେଇଛି । ଗର୍ଭାବସ୍ଥାର ପ୍ରଥମ ତିନି ମାସ ମଧ୍ୟରେ କଡ଼ା ଔଷଧ ଖାଇ ଯେଉଁମାନେ ବିକଳାଙ୍ଗ ହୋଇଛନ୍ତି । (ଏଣୁ ଗର୍ଭାବସ୍ଥାର ପ୍ରଥମ ତିନି ମାସ ମଧ୍ୟରେ କୌଣସି ଔଷଧ ପ୍ରୟୋଗ କରିବା ଅନୁଚିତ ।)

(ଖ) ଆହରଣକୃତ

(୧) ଅଭିଘାତଜ ରୋଗ (ଏହା କ୍ଷତ ଓ ଦଗ୍‌ଧ କାରଣରୁ ହୋଇପାରେ) ।

(୨) ସଂକ୍ରାମକ ରୋଗ (ଏହା ଜୀବାଣୁ ଭୂତାଣୁ ସଂକ୍ରମଣ ଯୋଗୁଁ ସମ୍ଭବପର ହୋଇଥାଏ ।

(୩) ପ୍ରଦାହଜନିତ ରୋଗ
ଉଦାହରଣ—ଚର୍ମ ଉପରେ ଫଳିଯିବା, ଶ୍ୱସନିକା ପ୍ରଦାହ ।

(୪) ଅସାତ୍ମ୍ୟ ସଂଯୋଗ ( Allergic disorders )
ଉଦାହରଣ—ଚର୍ମ ଉପରେ ଫଳିଯିବା, ଶ୍ୱସନିକା ପ୍ରଦାହ

(୫) ପୁଷ୍ଟିବିପାକ ରୋଗ—ବାୟୁଶୋଥ (ବେରିବେରି) ଶୀତାଙ୍ଗ (ସର୍ଭି ନକ୍ତାନ୍ଧତା ଭେନାନ୍ନାତୀୟ ଖାଦ୍ୟ ଅଭାବଜନିତ ଶୋଥ ।)

(୬) ମାରାତ୍ମକ ଅଭିବୃଦ୍ଧି :
ରକ୍ତାର୍ବୁଦ (କ୍ୟାନସର) ଶ୍ୱେତକୋଷିକା ବହୁଳପରୋଗ (ଲ୍ୟୁ କୋମିଆ)

(୭) ଚୟାପଚୟ ବିକୃତି :
ଗଳଗ୍ରନ୍ଥି ଅତିକ୍ରିୟତା (Hyperthyroidisim)
ମଧୁମେହ

(୮) ଔଷଧ ଅପଗ୍ରହକ ରୋଗ

(କ) ଅଯୁକ୍ତିକ ଔଷଧ ପ୍ରୟୋଗ
(ଖ) ଅତ୍ୟଧିକ ବା ନ୍ୟୂନ ମାତ୍ରାରେ ଔଷଧ ପ୍ରୟୋଗ
(ଗ) ଔଷଧ ସାଙ୍କର୍ଯ୍ୟ (Polypharmacy and Drug Inter acton
(ଘ) ଔଷଧ ନିଷେଧ ସ୍ଥଳରେ ଔଷଧ ପ୍ରୟୋଗ—ତଜ୍ଜନିତ ବୃକ୍କ, ଯକୃତ,ରକ୍ତମଜ୍ଜା (Bone marrow) ବିକୃତି

୪ । ଚର୍ମ ଓ ଶ୍ଳେଷ୍ମକଳା ଅନ୍ତର୍ଗତ ରୋଗ—

(କ) ଉଦାହରଣ—ବିଷାକ୍ତ କ୍ଷତ, ଅଭିସ୍ୟନ୍ଦ, ବ୍ୟାସିଲରି ଅତିସାର ମୂତ୍ରମାର୍ଗ ସଂକ୍ରମିତ ରୋଗ
(ଖ) ଶାରୀରିକ ପ୍ରକ୍ରିୟା ଅନ୍ତର୍ଗତ ରୋଗ

(୧) ଜାଠରାନ୍ତ ପ୍ରଣାଳୀ
ଉଦାହରଣ ଅନ୍ତକ୍ଷତ
(୨) ସ୍ନାୟବିକ ପ୍ରକ୍ରିୟା କେନ୍ଦ୍ର
ଉଦାହରଣ ଅପସ୍ମାର
(୩) ସ୍ୱୈଚ୍ଛିକ ସ୍ନାୟବିକ ପ୍ରକ୍ରିୟା
ଉଦାହରଣ—ରକ୍ତଚାପ ବୃଦ୍ଧି

(୪) ରକ୍ତ ସଂବହନ ପ୍ରକ୍ରିୟା
ଉଦାହରଣ—ହୃତ୍‌ଶୂଳ, ରକ୍ତବାହିକା, ରକ୍ତସ୍କନ୍ଦନ (Coronary thrombosis)

(୫) ଶ୍ୱାସ ସଂବହନ ପ୍ରକ୍ରିୟା
ଉଦାହରଣ—ଶ୍ୱସନିକା ଶ୍ୱାସ, ଛାତିର ଯକ୍ଷ୍ମା

(୬) ବୃକ୍କ
ଉଦାହରଣ—ବୃକ୍କାମୟ, ବୃକ୍କ ବିକାର

(୭) ଯକୃତ୍
ସଂକ୍ରାମକ କାମଳ

(୮) ରକ୍ତମଜ୍ଜା ଏବଂ ରକ୍ତ
ଉଦାହରଣ—ରକ୍ତହୀନତା ବା ପାଣ୍ଡୁତା

(୯) ପ୍ରଜନନ ପ୍ରକ୍ରିୟା
ଉଦାହରଣ—ଅନାର୍ତ୍ତବ, କଷ୍ଟାର୍ତ୍ତବ

(୧୦) ଆଖି, କାନ, ନାସା ଓ ଗଳା ସମ୍ପର୍କୀୟ ରୋଗ କିପରି ଔଷଧ ପ୍ରୟୋଗ କରିବାକୁ ହେବ ।

ପ୍ରୟୋଗ କୌଶଳ—

ରିକ୍‌ମେନ ଥେରାପି—

ଯେତେବେଳେ ରୋଗର ଯନ୍ତ୍ରଣା ଗୁରୁତର ଓ ଉଗ୍ର ସେତେବେଳେ ଯଥାଶୀଘ୍ର ଆବଶ୍ୟକୀୟ ଚିକିତ୍ସାବିଧାନ କରିବା ଆବଶ୍ୟକ । ଅନ୍ୟଥା ନାନା ଜଟିଳତା ସୃଷ୍ଟି ହୋଇପାରେ । ଉଗ୍ର ରୋଗ ପାଇଁ ସ୍ୱଳ୍ପକ୍ଷଣ ପାଇଁ ଚିକିତ୍ସା ଆବଶ୍ୟକ ହୁଏ, ଯଥା— ଫୁସ୍‌ଫୁସ ପ୍ରଦାହ (ନିଉମୋନିଆ) ଔପସର୍ଗିକ ମେହ (ଗନୋରିୟା) ପ୍ରଭୃତି ରୋଗ ମାତ୍ର ସପ୍ତାହକ ମଧ୍ୟରେ ଭଲ ହୋଇପାରେ । ମାତ୍ର ଯେଉଁ ସମସ୍ତ ପୁରୁଣା ହୋଇଯାଇଛି, ସେମାନଙ୍କର ଚିକିତ୍ସାପାଇଁ ୪୦–୬୦ଦିନ ଲଗିପାରେ । ରାଜଯକ୍ଷ୍ମାର ଚିକିତ୍ସା ନିମ୍ନତମ ଦେଢ଼ ବର୍ଷ ଲଗେ । କୁଷ୍ଠର ଚିକି ତ୍ସା ୪ବା ୮ ବର୍ଷ ସମୟ ଲଗେ, ସେଥିପାଇଁ ନିର୍ଦ୍ଦିଷ୍ଟ ରାସାୟନିକ ଚିକିତ୍ସା କରିବାକୁ ପଡ଼େ । ପ୍ରତି ଚିରକାଳୀନ ରୋଗରେ ରୋଗୀର ଦୁର୍ବଳତା ଅନ୍ୟତମ କାରଣ ଭାବରେ ଦେଖାଯାଇଥାଏ । ସେପରି ସ୍ଥଳରେ ପୁଷ୍ଟିକାରକ ଔଷଧ, ଲଘୁ ପାଚ୍ୟ ଖାଦ୍ୟ ବିଶେଷ ପ୍ରୟୋଜନ । ଔଷଧର ଉପଯୁକ୍ତ ମାତ୍ରା ଏବଂ ଉପଯୁକ୍ତ ଚିକିତ୍ସା କରା ନ ଗଲେ ନାନା ଜଟିଳତା ଦେଖାଯାଇଥାଏ ।

ବିଃ ଦ୍ରଃ —

୧ । ଏହି ଅବସ୍ଥା ପାଇଁ ଆଇବୋସାଙ୍ଗ ହେଉଛି, ଏକ ସୁନିର୍ବାଚିତ ପୁଷ୍ଟିକାରକ ଔଷଧ ।

୨। ନିମ୍ନଲିଖିତ ଔଷଧଗୁଡ଼ିକ ସିଧାସଳଖ ରୋଗୀର ପରିପାକ ପ୍ରକ୍ରିୟା ଉପରେ କାର୍ଯ୍ୟ କରିଥାଏ ଯଥା—ଚିନିୟମକୋ, କାଇନୋଟୋମିନ୍, ମ୍ୟାଗ୍ନିନ୍, ପିପାରିଡ୍, ସାଇଫସ୍ ସ୍ନୋଲକ୍ସ ଟ୍ୟାକ୍ସିନ୍

୩। ନିମ୍ନଲିଖିତ ଔଷଧଗୁଡ଼ିକ ରୋଗୀର ସ୍ନାୟୁମଣ୍ଡଳୀ ଉପରେ ପ୍ରତ୍ୟକ୍ଷ ଭାବରେ କାର୍ଯ୍ୟ କରେ ଯଥା—ଅଗରକୋ, ଆମିଗ୍ରିଆ, ଡେସିଲ, ହରମୋପାଇରିନ୍, ନର୍ଭୋପ୍ଲେକ୍ସ, ସେନ୍‌ଜିନ୍, ଭାଇଟାଲ ଏସେନ୍ସ।

୪। ରକ୍ତ ଅଭିବୃଦ୍ଧି ପାଇଁ ନିମ୍ନ ଔଷଧ ଗୁଡ଼ିକର କାର୍ଯ୍ୟକାରିତା ସୁପରିଚିତ। ଯଥା— ଆଲବୋସାଙ୍ଗ, ହିମୋପ୍ଲେକ୍ସ, ଆଇଓବିନ୍, ଆଇଓକୁଇନ୍, ମେଡ଼ିଟାବ, ରସଜେଣ୍ଟ, ହାର୍ବୋ ସଲଫ, ସୁଲ୍‌ଫାସେନ୍।

୫। ଶ୍ୱାସ ସଂବହନ ପ୍ରକ୍ରିୟା ଉପରେ ନିମ୍ନଲିଖିତ ଔଷଧଗୁଡ଼ିକର ପ୍ରଭାବ ସୁପ୍ରମାଣିତ ଯଥା—ବେଙ୍କୋମୋନ୍, ଡାନଜିନ୍, ଡେସମା, ଫ୍ଲୁଜେନ, ହରମୋପାଇରିନ୍, କୋଫଲିନ୍, କୋଫ୍ଲାଜାନ୍, ଏବଂ ମେଡ଼ିଟାବ୍।

୬। ମୂତ୍ର ପ୍ରଜନନ ପ୍ରକ୍ରିୟା ଉପରେ ନିମ୍ନ ଔଷଧଗୁଡ଼ିକ ପ୍ରଯୁଜ୍ୟ। ଯଥା—ନେଭସ୍, ଟ୍ରାଇକୋ।

୭। ଆମିଗ୍ରୟା, ଅଉରାଟିନମ୍, ଗ୍ରାଣ୍ଡିକୋ ଏହି ତିନୋଟି ଔଷଧ ରକ୍ତସଂବହନ ପ୍ରକ୍ରିୟା ଉପରେ କାମ କରିଥାଏ।

୮। ଅଉରାଟିନମ୍, ବ୍ରହ୍ମାଡାଇନ, ଚିନିୟମ୍‌କୋ ଜରାୟୁ ରୋଗ ପାଇଁ ପ୍ରଶସ୍ତ।

(କ) ରୋଗ ଉଗ୍ର ଅବସ୍ଥାରେ ଗୋଟିଏ ବା ଦୁଇଟି ବା ତତୋଧିକ ଔଷଧ ଏକ ସମୟରେ ପ୍ରୟୋଗ କରାଯାଇପାରେ।

(ଖ) ରୋଗୀର ସଙ୍କଟଜନକ ଅବସ୍ଥାରେ ରୋଗୀର ପଷ୍ଟିକାରିକତା ଓ ପରିପାକ ଶକ୍ତି ଠିକ୍ ରହୁଛି କି ନାହିଁ ସେଥିପ୍ରତି ଯଥାର୍ଥ ଧ୍ୟାନ ଦେବା ଆବଶ୍ୟକ। ରୋଗ ଆରୋଗ୍ୟ ହୋଇ ଆସୁଥିବା ଅବସ୍ଥାରେ ମଧ୍ୟ ଉପରୋକ୍ତ ଆବଶ୍ୟକତା ପ୍ରତି ଦୃଷ୍ଟିଦେବା ଆବଶ୍ୟକ।

(ଗ) ଏ କଥା ମନେ ରଖିବାକୁ ହେବ, ରୋଗୀର ଜୀବକଗଠନ କ୍ରିୟା ( Tissues making ) ଶାରୀରିକ ସ୍ଥିତି ଓ ପୁଷ୍ଟି ଉପରେ ଔଷଧ କାର୍ଯ୍ୟକାରିତା ନିର୍ଭରଶୀଳ, ରୋଗ ଚିକିତ୍ସାରେ ଚିକିତ୍ସକର ସଫଳତା ନିଜର ଚିକିତ୍ସା ବିଷୟକଜ୍ଞାନ, ରୋଗର ଶ୍ରେଣୀ ନିର୍ଣ୍ଣୟ, ଔଷଧର ଗୁଣଧର୍ମ ଜ୍ଞାନ, ଔଷଧର ପ୍ରତିକ୍ରିୟାତ୍ମକ ଦୋଷ, ରୋଗବିଶେଷରେ ଯଥାର୍ଥ ଔଷଧ ନିର୍ବାଚନ ଦକ୍ଷତା ଉପରେ ନିର୍ଭର କରେ।

ଚିକିତ୍ସା କାର୍ଯ୍ୟ ହେଉଛି ଏକ କଳା ଓ ବିଜ୍ଞାନର ସମନ୍ୱୟ। ଏଣୁ ଚିକିତ୍ସକ ନିଜ ବୈଜ୍ଞାନିକ ତଥା ତାତ୍ତ୍ୱିକ ଜ୍ଞାନ ବଢ଼ାଇବା ସଙ୍ଗେ ସଙ୍ଗେ ଚିକିତ୍ସା କୌଶଳ ମଧ୍ୟ ଜାଣିବା ଆବଶ୍ୟକ।

ରୋଗର ହେତୁ ବିଷୟରେ ଚିକିତ୍ସକର ସଠିକ ଜ୍ଞାନ ଥିବା ଆବଶ୍ୟକ । ଚିକିତ୍ସା କାର୍ଯ୍ୟରେ ପ୍ରବୃତ୍ତ ହେବା ପୂର୍ବରୁ ପ୍ରତିରୋଗର କାରଣ କଅଣ ସେ ବିଷୟରେ ସୁସ୍ପଷ୍ଟ ଧାରଣା କରିନେବା ଦରକାର । ରୋଗ ଉଗ୍ର ଅବସ୍ଥାର ପ୍ରକାଶ ପାଉଥିବା ଲକ୍ଷଣଗୁଡ଼ିକ ବିଷୟରେ ସର୍ବଦା ଅବହିତ ରହି ଚିକିତ୍ସା କଲେ, ଚିକିତ୍ସାରେ ନିଶ୍ଚିତ ସଫଳତା ମିଳେ ।

ଔଷଧ ପ୍ରୟୋଗ–

ରୋଗୀର ବୟସ ଅନୁଯାୟୀ ମାତ୍ରା ନିର୍ଣ୍ଣୟ କରିବାକୁ ହେବ । ଶିଶୁ ଓ ପିଲାମାନଙ୍କୁ ସର୍ବଦା କମ୍ ମାତ୍ରାରେ ଔଷଧ ଦେବାକୁ ହୋଇଥାଏ । କାରଣ ସେମାନଙ୍କର ପାଚକଶକ୍ତି କ୍ଷୀଣ ଥାଏ । ଅନୁରୂପ ଭାବରେ ଅତି ବୟସ ଲୋକଙ୍କ ପାଇଁ ମଧ୍ୟ ଔଷଧର ମାତ୍ରା ଲଘୁ କରିବା ଆବଶ୍ୟକ । କାରଣ ରୋଗୀର ବାର୍ଦ୍ଧକ୍ୟବଶତଃ ଶାରୀରିକ ପ୍ରକ୍ରିୟାଗୁଡ଼ିକ ଦୁର୍ବଳ ଓ କ୍ଷୀଣ ଶକ୍ତିଯୁକ୍ତ ହୋଇଥାନ୍ତି । ଏଣୁ ସେପରି ବୟସର ଲୋକଙ୍କୁ ଔଷଧ ସାଧାରଣ ବୟସ ମାତ୍ରାର ୩/୪ ଅଂଶ ଦେବା ଆବଶ୍ୟକ । ଔଷଧଗୁଡ଼ିକର ଗୁଣଧର୍ମ ପ୍ରକରଣରେ ଯେଉଁ ବୟସ ମାତ୍ରା ଦିଆଯାଇଛି, ତାହା ୨୦–୬୦ ବର୍ଷ ବୟସମାନଙ୍କ ପାଇଁ ଉଦ୍ଦିଷ୍ଟ । ଯେଉଁ ଶିଶୁମାନଙ୍କର ବୟସ ଦଶବର୍ଷରୁ କମ୍, ସେମାନଙ୍କୁ ୧/୨ ମାତ୍ରାର ଔଷଧ ପ୍ରୟୋଗ କରିବାକୁ ହୋଇଥାଏ ।

ଶିଶୁମାନଙ୍କୁ କୌଣସି ଅବସ୍ଥାରେ ଜୋର ଜବରଦସ୍ତି କରି ବଟିକା ବା ଚୂର୍ଣ୍ଣ ଔଷଧ ପ୍ରୟୋଗ କରିବା ଅନୁଚିତ । ସେମାନଙ୍କୁ ଯେଉଁ ଔଷଧ ଦିଆଯିବ, ତାହା ଉତ୍ତମ ରୂପେ ମହୁରେ ଅଥବା କୌଣସି ସୁସ୍ୱାଦୁ ସିରପରେ ମିଶାଇ ଦିଆଯିବା ଆବଶ୍ୟକ । ତଦ୍ୱାରା ରୋଗୀର ବାନ୍ତି ପ୍ରଭୃତି ବିକାର ହୁଏ ନାହିଁ ।

ଅତିସାର ଗ୍ରହଣୀ ରୋଗ ଚିକିତ୍ସା କରିବା ସମୟରେ ଯଥାର୍ଥ ଔଷଧ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ରୋଗୀର ଯେପରି ନିର୍ଜ୍ଜଳତା ଓ ବିଷମୟତା ନ ବଢ଼ୁଛି–ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ । ଯେକୌଣସି ଅବସ୍ଥାରେ ବାହ୍ୟିକ ବେଦନା ଦୂର କରିବା ପାଇଁ ତେସିଲ ପ୍ରୟୋଗ କରାଯାଇପାରେ ଏବଂ ଆଭ୍ୟନ୍ତରୀଣ ଶୂଳ ବେଦନା ପରି ବେଦନା ହେଉଥିଲେ ସେ ସ୍ଥଳରେ ଏଟ୍ରୋପିନ ପ୍ରୟୋଗ କରିବା ଆବଶ୍ୟକ । ଅତିସାର ଆନ୍ତ୍ରିକ ଜ୍ୱର (ଟାଇଫଏଡ୍) ଭୟାନକ ଉଦରପୀଡ଼ା ବା ପରିପାକ ପ୍ରକ୍ରିୟାର କୌଣସି ବିକାର ଥିଲେ ତେସିଲ ପ୍ରୟୋଗ କରିବା ନିଷିଦ୍ଧ ।

———

# ନିମ୍ନଲିଖିତ ରୋଗଗୁଡ଼ିକର ଲକ୍ଷଣ ଓ ଉପସର୍ଗ

ରକ୍ତହୀନତା—

ଏ ଅବସ୍ଥାରେ ସାଧାରଣତଃ ଆଖିପତା, ଓଠ ଓ ଚର୍ମ ଉପରେ ପାଣ୍ଡୁରତା ଦେଖା ଦେଇଥାଏ । କ୍ଳାନ୍ତି, ଅବସାଦ ଓ ଶ୍ୱାସକଷ୍ଟ ମଧ୍ୟ ଜନ୍ମେ ଏବଂ ହୃତ୍‌ସ୍ପନ୍ଦନ ମଧ୍ୟ ବଢ଼ିଥାଏ । ଏହି ଅବସ୍ଥାରେ ଅଜୀର୍ଣ୍ଣ ଓ ଅଗ୍ନିମାନ୍ଦ୍ୟ ଦେଖା ଯାଇଥାଏ ।

ଶ୍ୱାସ—

ଏହି ଅବସ୍ଥାରେ ଗଳା ଓ ଛାତି ଚାପି ହେଲା ପରି ଲାଗେ, ଶ୍ୱାସକଷ୍ଟ, ଶ୍ୱାସରୋଧ ସଙ୍ଗେ ଶ୍ଳେଷ୍ମା ସ୍ରାବ ଘଟେ । ରୋଗୀ ରାତିରେ ଶୋଇଥିବା ଅବସ୍ଥାରେ ହଠାତ୍ ଉଠି ଶ୍ୱାସକଷ୍ଟରେ ଆକ୍ରାନ୍ତ ହୋଇ ପଡ଼ିଥାଏ । ରୋଗୀ ଅସ୍ଥିର ହୋଇ ବିଛଣାରୁ ଉଠି ଖୋଲା ପବନ ପାଇବା ପାଇଁ ଝରକା ଖୋଲି ବସେ ବା ବାହାରକୁ ଚାଲିଯାଏ । ଏପରି ଅବସ୍ଥାରେ ହଠାତ୍ ଛାତି ଚାପି ହୋଇଯାଏ । ଶ୍ୱାସକଷ୍ଟ ଅନୁଭବ କରେ ଏବଂ ଶ୍ୱାସ ନେବା ସମୟରେ ଦୀର୍ଘ ଶ୍ୱାସ ଶବ୍ଦ କରେ ।

ସ୍ନାୟବିକ ଦୁର୍ବଳତା—

ଏହି ଅବସ୍ଥାଟି ଶାରୀରିକ ଓ ମାନସିକ ଦୁର୍ବଳତା ହେତୁ ଦେଖାଯାଇଥାଏ । ବିଶେଷ ଶାରୀରିକ ପୀଡ଼ା, ମାନସିକ ଅବସାଦ, ରକ୍ତସ୍ରାବ ବା ମୃଦୁ ବିଷକ୍ରିୟା ହେତୁ ଘଟିଥାଏ । ଆଧୁନିକ ମତ ଅନୁଯାୟୀ ଏପରି ଅବସ୍ଥାରେ ପ୍ରଚ୍ଛନ୍ନମାନସିକ ରୂପ ନିହିତ ଥାଏ । ରୋଗୀ ଯେଉଁସବୁ ପୀଡ଼ା କଥା କହେ, ତାର ପ୍ରକୃତ ସ୍ୱରୂପ ଶାରୀରିକ କାରଣରୁ ନିର୍ଣ୍ଣୟ ହୋଇପାରେ ନାହିଁ । ରୋଗୀର ସ୍ୱାସ୍ଥ୍ୟକ୍ଷୀଣ, ମାନସିକ ଓ ଶାରୀରିକ ଅବସନ୍ନତା ଲାଗି ରହିଥାଏ । ଅଳୀକ ପୀଡ଼ା ଓ ଯନ୍ତ୍ରଣା ଅନୁଭବ କରେ । ରୋଗୀ ଦିନପରେ ଦିନ କ୍ଷୀଣ ହୋଇଯାଏ ।

ଅପସ୍ମାର (ହିଷ୍ଟିରିୟା)—

ଏହା ଏକ ପ୍ରକାର ମାନସିକ ରୋଗ । ଏଥିରେ ରୋଗୀର କୌଣସି ଭାବାବେଗ ଚାପି ହୋଇ ପରେ ଏପରି ଶରୀର ଓ ମନରେ ଲକ୍ଷଣ ସୃଷ୍ଟି କରେ । ସୂକ୍ଷ୍ମ ପରୀକ୍ଷା ଦ୍ୱାରା ଶରୀରରୁ କୌଣସି ଲକ୍ଷଣ ଠଉରାଇ ହୁଏ ନାହିଁ ।

ସନ୍ନ୍ୟାସ–

ଏହାଁ ସାଧାରଣତଃ ଶୈଶବାବସ୍ଥାରେ ଦେଖାଯାଇଥାଏ । ସମସ୍ତ ପ୍ରକାର ମୂର୍ଚ୍ଛା ବା ଆକ୍ଷେପ ଆରମ୍ଭ ହେବା ପୂର୍ବରୁ ରୋଗୀ ତାର ପୂର୍ବାଭାସ ପାଇଥାଏ । ଅବଶ୍ୟ ମୂର୍ଚ୍ଛା ଲକ୍ଷଣଟା ହଠାତ୍ ଆସିଥାଏ । ଏପରି ଅବସ୍ଥାରେ ରୋଗୀର ମୁଣ୍ଡ ଘୂରାଇ ହୋଇଥାଏ ଏବଂ କାଠ ଖଣ୍ଡ ପରି ତଳେ ପଡ଼ିଯାଏ । ନିଜକୁ ବରାବର ଆଘାତକରେ । ପେଶୀଗୁଡ଼ିକ ଅଚଳ ହୋଇଯାଏ, ହାତ ମୁଠା ମୁଠା କରେ । ମୁହଁ ପ୍ରଥମ ଅବସ୍ଥାରେ ଫିକା ପଡ଼ିଥାଏ, ତାହା କ୍ରମଶଃ ଶ୍ୱାସ ପ୍ରଶ୍ୱାସ ବିଷମତା ସଙ୍ଗେ ନୀଳାଭ ଦେଖାଯାଏ । କେତେକ ସେକେଣ୍ଡ ପରେ ମାଂସପେଶୀଗୁଡ଼ିକର ସଙ୍କୋଚନ ସଙ୍ଗେ ସଙ୍ଗେ ଆକ୍ଷେପ ଜନ୍ମେ । ଆଖିର ଡୋଳା ଘୂରିବାକୁ ଲାଗେ । ଅନେକ ସମୟରେ ହନୁମୂଳ ଚାପି ହୋଇ-ଯାଇ ଜିଭକୁ କାମୁଡ଼ିଦିଏ । ଅନିଚ୍ଛାକୃତ ଭାବେ ମଳଭାଣ୍ଡ ଓ ମୂତ୍ରଭାଣ୍ଡରୁ ମଳମୂତ୍ର ନିର୍ଗତ ହୋଇଥାଏ । ରୋଗୀ ଧୀରେ ଧୀରେ ସମ୍ପୂର୍ଣ୍ଣ ସନ୍ନ୍ୟାସ ଅବସ୍ଥାର ସମ୍ମୁଖୀନ ହୁଏ । କ୍ରମେ ଶାଖା ପ୍ରଶାଖାଗୁଡ଼ିକ ଶିଥିଳ ହୋଇଯାଏ । ରୋଗୀ ଅନେକ ସମୟ ପାଇଁ ଶୋଇ ରହେ ।

ଶ୍ୱସନୀ ପ୍ରଦାହ–

ଏହି ଅବସ୍ଥାରେ ରୋଗୀର ଛାତିର ଉପର ଅଂଶ ଚାପି ହୋଇଗଲା ପରି ଅନୁଭବ କରେ । ଅତି କଷ୍ଟରେ କାଶ ସଙ୍ଗେ ଶୁଖିଲା କଫ ପଡ଼େ । ପରେ ଉତ୍ତାପ ବଢ଼େ । ରୋଗୀ ସରଳ ଭାବରେ କାଶି କଫ ବାହାର କରେ । କଫ ସରଳ ହେବା ସଙ୍ଗେ ସଙ୍ଗେ ଯନ୍ତ୍ରଣା କ୍ରମଶଃ କମି ଆସେ । ଏପରି କି ଉତ୍ତାପର ମାତ୍ରା ବଢ଼ିପାରେ । ଶ୍ୱାସ ତ୍ୟାଗ କଷ୍ଟକର ହୋଇପାରେ । ଛାତିରେ ବିମ୍ବସ୍ଫୋଟନ ଓ କୂଜନ ଶବ୍ଦ ଶୁଣାଯାଇଥାଏ ।

ଉରସ୍ତୋୟ (ପ୍ଲୁରେସି)–

ଏହି ଅବସ୍ଥାରେ ଛାତିରେ ସୂଚୀଭେଦ ଯନ୍ତ୍ରଣା, ଛାତିକଷ୍ଟ ଓ କଫସ୍ରାବ ଦେଖାଦେଇଥାଏ । କମ୍ପ ସହିତ ଜ୍ୱରର ଉତ୍ତାପ ବଢ଼ିଥାଏ–ଉତ୍ତାପର ମାତ୍ରା ୧୦୧ ଡିଗ୍ରୀ ପର୍ଯ୍ୟନ୍ତ ବଢ଼ିଥାଏ । ଶ୍ଳେଷ୍ମାସ୍ରାବ ତରଳ ହେବା ସଙ୍ଗେ ଛାତିର ଯନ୍ତ୍ରଣା କମିଥାଏ । କିନ୍ତୁ ଶ୍ୱାସକଷ୍ଟ ଲାଗି ରହିଥାଏ । ଜ୍ୱରର ଉତ୍ତାପ ମାତ୍ରା ଉଚ୍ଚରେ ରହେ । ଯଦି ଜ୍ୱର ସମୟ ସମୟରେ ଛାଡ଼ିଯାଏ ଓ ହୁଏ, କମ୍ପ ସଙ୍ଗେ ପ୍ରଚୁର ଘର୍ମସ୍ରାବ ହୁଏ, ସେ ସ୍ଥଳରେ ଅନ୍ତଃଚ୍ଛୂୟ ହୋଇଥିବାର ଆଶଙ୍କା ରହେ ।

ଫୁସ୍‌ଫୁସ୍ ପ୍ରଦାହ (ନିଉମୋନିଆ)–

ଏହି ଅବସ୍ଥାରେ ପ୍ରବଳ ଶୀତ କମ୍ପ ସଙ୍ଗେ ଉତ୍ତାପ ମାତ୍ରା ୧୦୩ ଡିଗ୍ରୀ ପର୍ଯ୍ୟନ୍ତ ବଢ଼ିଥାଏ । ଏପରି ଅବସ୍ଥାରେ ଛାତିରେ ସମୟ ସମୟରେ ପେଟରେ ଯନ୍ତ୍ରଣା ଦେଖା-ଦେଇଥାଏ ଏବଂ ଶ୍ୱାସର ବେଗ ଖର, କଷ୍ଟପ୍ରଦ ଏବଂ ନାଡ଼ୀର ସ୍ପନ୍ଦନ କ୍ଷୀପ୍ର ହୋଇଥାଏ ।

ରୋଗୀ ବିଛଣାରେ ବସି ରହେ । ରୋଗୀ ବିଶେଷ ଇତସ୍ତତଃ ଓ ବ୍ୟସ୍ତ ବ୍ୟାକୁଳ ହୁଏ । ଅତି କଷ୍ଟରେ କାଶି କାଶି କଫ ବାହାର କରେ । ସେ କଫରେ ଲୁହାକଳଙ୍କି ପରି ନାଲି ଦାଗ ଥାଏ । ଏପରି ଅବସ୍ଥାରେ ଉତ୍ତାପ ମାତ୍ରା ଉଗ୍ର ରହେ, ରାତିରେ ପ୍ରଳାପ ଦେଖାଦିଏ ।

ହୁପିଂ କଫ୍—

ଏହା ଶୈଶବାବସ୍ଥାର ଏକ ସଂକ୍ରାମକ ରୋଗ । ଏହି ରୋଗର ପ୍ରାରମ୍ଭ ଅବସ୍ଥା ଜ୍ୱରୁଆ ଜ୍ୱରୁଆ ଭାବ ସଙ୍ଗେ ଅଳ୍ପ କଫ ଥାଏ । ପ୍ରଥମ ଅବସ୍ଥା ସପ୍ତାହେ ପର୍ଯ୍ୟନ୍ତ ରହେ । ତାପରେ କାଶ ସମୟରେ ଏକ ବିଚିତ୍ର ଶବ୍ଦ ଶୁଣାଯାଏ । କାଶ ଲହରାଇ ଲହରାଇ ହୁଏ । ଶେଷରେ ହୁପ୍ ହୁପ ଶବ୍ଦ ହୁଏ । ଗୁଡ଼ାଏ କଫ ଏକ ସମୟରେ ବାହାରି ନ ଯିବା ପର୍ଯ୍ୟନ୍ତ କାଶ ଲହରାଇ ଲହରାଇ ହୁଏ । ଏ ଜାତୀୟ କାଶ ଖାଇବା ପରେ ବା ରାତିରେ ଶୋଇବା ସମୟରେ ବିଶେଷ ଭାବରେ ହୋଇଥାଏ । କାଶର ଆକ୍ରମଣ ସମୟରେ ଆଖିର ଡ଼ୋଳା ବାହାରି ପଡ଼େ, ସମୟ ସମୟରେ ଡୋଳାରେ ରକ୍ତ ଚହକି ଯାଏ । ସମୟ ସମୟରେ ପେଟରେ ଯନ୍ତ୍ରଣା ହୁଏ, ନାକରୁ ରକ୍ତ ପଡ଼ିପାରେ, ମୂର୍ଚ୍ଛା ଓ ଶ୍ୱାସରୋଧ ମଧ୍ୟ ଘଟିଥାଏ ।

ଯକ୍ଷ୍ମା—

ଯକ୍ଷ୍ମାର ପ୍ରାରମ୍ଭ ଅବସ୍ଥାରେ ରୋଗୀ ବିଶେଷ ଦୁର୍ବଳତା ଅନୁଭବ କରେ । ପ୍ରବଳ ଘର୍ମସ୍ରାବ ହୁଏ, ରୋଗୀ ସହଜରେ କ୍ଳାନ୍ତ ହୋଇପଡ଼େ । କଫ ସାମାନ୍ୟ ପରିମାଣରେ ଦେଖାଯାଏ । କ୍ଷୁଧାମାନ୍ଦ୍ୟ ଦେଖାଯାଏ । ଧୀରେ ଧୀରେ କାଶ ଲଗି ରହେ । ଏ ଅବସ୍ଥାରେ ରକ୍ତହୀନତା ଏକ ଅବଶ୍ୟମ୍ଭାବୀ ଲକ୍ଷଣ ଭାବରେ ଦେଖାଯାଏ । ରୋଗର ଆକ୍ରମଣ ବୃଦ୍ଧି ସଙ୍ଗେ ପ୍ରତିଦିନ ସନ୍ଧ୍ୟାରେ ଜ୍ୱର ଆସେ, ଝାଳର ମାତ୍ରା ବଢ଼େ ଏବଂ ଦୁର୍ବଳତା ବୃଦ୍ଧି ପାଏ । କାଶିବା କଷ୍ଟକର ହୋଇପଡ଼େ । ଛାତି ଗୁପି ହୋଇଗଲା ପରି ବୋଧ କରେ । ପ୍ରଚୁର ପୂଜକଫ ସଙ୍ଗେ ରକ୍ତ ଛିଟା ଦେଖାଯାଇଥାଏ ।

ମଧୁମେହ—

ଏହି ରୋଗରେ ରୋଗୀ ବିଶେଷ ଶୋଷ ଅନୁଭବ କରେ ଏବଂ ପ୍ରଚୁର ପରିମାଣରେ ମୂତ୍ର ତ୍ୟାଗ କରେ । କ୍ଷୁଧା ମାତ୍ରା ବଢ଼ିଯାଏ । ମାତ୍ର ରୋଗୀ କ୍ରମଶଃ ଦୁର୍ବଳତା ଅନୁଭବ କରେ । କ୍ରମଶଃ ପେଶୀ ଶିଥିଳତା ଅନୁଭବ କରେ, ପ୍ରକୃତି ଚିଡ଼ିଚିଡ଼ା ହୋଇଯାଏ । ରୋଗୀର ପାଟି ଓ ଜିଭ ଶୁଖିଲା ଅନୁଭୂତ ହୁଏ । ମୂତ୍ର ପରୀକ୍ଷା ଦ୍ୱାରା ମୂତ୍ରରେ ଶର୍କରା ଭାଗ ଯାଉଥିବାର ପ୍ରମାଣିତ ହୁଏ ।

## ଶ୍ୱେତ ପ୍ରଦର—

ଏହି ରୋଗରେ ଯୋନି ପଥରୁ ଏକ ପ୍ରକାର ଧଳା ସ୍ରାବ ହୁଏ । ସମୟ ସମୟରେ ଏହି ସ୍ରାବ ଲଜୁଆ, ପୂଜଯୁକ୍ତ ଥାଏ । ଏହି ଅବସ୍ଥାଟି ସାଧାରଣତଃ ଦୁର୍ବଳତା ଓ ସ୍ତ୍ରୀ ଲୋକଙ୍କର ସ୍ନାୟବିକ ସଂସ୍ଥପ ହେତୁ ଦେଖାଯାଇଥାଏ ।

## ମ୍ୟାଲେରିୟା—

ମ୍ୟାଲେରିୟା ରୋଗର ସାଧାରଣତଃ ତିନିଟି ଅବସ୍ଥା ଅଛି । ପ୍ରଥମ ଶୀତ ଅବସ୍ଥା, ଦ୍ୱିତୀୟ ଉଷ୍ଣ ଅବସ୍ଥା ଓ ତୃତୀୟ ଘର୍ମାବସ୍ଥା ।

ଶୀତ ଅବସ୍ଥା—ଏହି ଅବସ୍ଥାଟି ୧/୪ରୁ ୨ ଘଣ୍ଟା ପର୍ଯ୍ୟନ୍ତ ରହେ । ଏହି ଅବସ୍ଥାରେ ମୁଣ୍ଡବ୍ୟଥା, ସର୍ବାଙ୍ଗ ପୀଡ଼ା ଓ କମ୍ପ ହୁଏ । ଶରୀରରେ କମ୍ପ ହେବା ହେତୁ ଦାନ୍ତକୁ ଦାନ୍ତ ବାଜେ ।

ଉଷ୍ଣ ଅବସ୍ଥା—ଏହା ସାଧାରଣତଃ ଚାରିଘଣ୍ଟା ପର୍ଯ୍ୟନ୍ତ ଲାଗି ରହେ । ଉଷ୍ମର ମାତ୍ରା ସର୍ବାଙ୍ଗକୁ ସଞ୍ଚରିଯାଏ । ସମୟ ସମୟରେ ସଂଜ୍ଞା ନାଶ ଓ ପ୍ରଳାପ ଦେଖାଯାଇଥାଏ ।

ଘର୍ମାବସ୍ଥା—ଏହା ଏକ ଘଣ୍ଟାରୁ ଦୁଇ ଘଣ୍ଟା ପର୍ଯ୍ୟନ୍ତ ରହେ । ଏହି ଅବସ୍ଥାରେ ପ୍ରଚୁର ପରିମାଣରେ ଝାଳ ବହେ । ଉତ୍ତାପ ମାତ୍ରା କମି କମି ଯାଏ । ଅଶ୍ୱସ୍ତିଭାବ କମିଯାଏ । ମ୍ୟାଲେରିୟା ଜୀବାଣୁର ଭେଦ ଅନୁଯାୟୀ ଏହି ପ୍ରକାର ଜ୍ୱର ଆକ୍ରମଣ ପ୍ରତିଦିନ ତିନିଦିନ ବା ଚାରିଦିନ ଅନ୍ତରରେ ହୋଇଥାଏ ।

## ମିଳିମିଳା—

ରୋଗୀର ଜଳୁଆ ଭାବ ଲାଗି ରହେ, ନାକରୁ ଆଖିରୁ ପାଣି ବୁହେ । ମୁଣ୍ଡବିନ୍ଧା ଏବଂ ଫିଭର ପ୍ରଭାବ ଏହି ରୋଗରେ ଏକ ସାଧାରଣ ଲକ୍ଷଣ । ଏହି ଅବସ୍ଥା ପ୍ରାୟ ଚାରିଦିନ ରହିବା ପରେ, ରୋଗୀର ମୁହଁରେ ଛୋଟ ଛୋଟ ଦାନା ଦେଖା-ଯାଏ । ତାହା କ୍ରମଶଃ ସମଗ୍ର ଶରୀରକୁ ସମ୍ପ୍ରସାରିତ ହୋଇଯାଏ । ସର୍ଦ୍ଦିଭାବ ବରାବର ଲାଗିଥାଏ । ସ୍ଥଳବିଶେଷରେ ଏହା ଗଳାକୁ ଆକ୍ରାନ୍ତ କରିଥାଏ । ତଦ୍ୱାରା ସ୍ୱରଭଙ୍ଗ ମଧ୍ୟ ଦେଖାଯାଇଥାଏ । ଏହି ରୋଗରେ ଶ୍ୱସନୀ ପ୍ରଦାହ, କଫର ଘଡ଼ ଘଡ଼ ଶବ୍ଦ ମଧ୍ୟ ଅନୁଭୂତ ହୋଇଥାଏ ।

## ହାଡ଼ଫୁଟି (ଚିକେନ ପକ୍ସ)—

କିଛି ସମୟ ଦେହହାତ ଘୋଳାବିନ୍ଧା ହେବା ପରେ ଜ୍ୱରର ଉତ୍ତାପ ବଢ଼େ । ରୋଗୀର ମୁହଁ, ଛାତି, ପିଠି ସମୟ ସମୟରେ ଶାଖା ଭାଗରେ ନାଲି ଚିହ୍ନ ଦେଖାଯାଏ । ଅଳ୍ପ ସମୟରେ ନାଲି ଚିହ୍ନଗୁଡ଼ିକ ଫୁଟୁକାରେ ପରିଣତ ହୁଏ । ପ୍ରାୟ ଚବିଶ ଘଣ୍ଟା ପରେ ଫୁଟୁକା ଗୁଡ଼ିକରେ ପୂଜ ସଞ୍ଚିତ ହେଲା ପରି ଜଣାପଡ଼େ ।

ଗ୍ରନ୍ଥିକ ଯକ୍ଷ୍ମା (ଟ୍ୟୁବରକ୍ୟୁଲସ ଗ୍ଲାଣ୍ଡ)—

ଏହା ବିଶେଷତଃ ଶିଶୁମାନଙ୍କୁ ଆକ୍ରମଣ କରିଥାଏ । ଏହି ରୋଗୀ ସାଧାରଣତଃ ରକ୍ତହୀନତାଗ୍ରସ୍ତ ଦୁର୍ବଳ, କଫପ୍ରବଣ ଓ କ୍ଷୀଣ ଓଜନବିଶିଷ୍ଟ ହୋଇଥାଏ । ଏହି ରୋଗ ସାଧାରଣତଃ ଏକ ଧରଣର ଗ୍ରନ୍ଥି ସ୍ଥଳରେ ସୀମିତ ରହେ ।

ଶ୍ଳୈଷ୍ମିକ ଜ୍ୱର (ଇନ୍‌ଫ୍ଲୁଏନ୍‌ଜା)—

ଏହି ରୋଗରେ ରୋଗୀ ହଠାତ୍ ସର୍ବାଙ୍ଗ ପୀଡ଼ା, ମୁଣ୍ଡବିନ୍ଧା ଓ ପୃଷ୍ଠଯନ୍ତ୍ରଣା ଅନଭବ କରେ । ଜ୍ୱରର ଉତ୍ତାପ ଦ୍ରୁତଗତିରେ ବୃଦ୍ଧିପାଏ । ରୋଗୀ ବିଶେଷ ଅସ୍ୱସ୍ତି ଅନଭବ କରେ, ପେଶୀ, ଗଣ୍ଠି ସ୍ଥାନରେ ପୀଡ଼ା ଅନୁଭବ କରେ । ଅସ୍ତବ୍ୟସ୍ତତା ସଙ୍ଗେ ଦର୍ବଳତା ଅନୁଭବ କରେ । ତିନି ଚାରି ଦିନ ପରେ ଜ୍ୱରର ଉତ୍ତାପ କମିଯାଏ । ଦୁର୍ବଳତା ଓ ଅବସନ୍ନତା କିଛି ଦିନ ପାଇଁ ଲାଗି ରହେ । ଯଥାର୍ଥ ବିଶ୍ରାମ ନ ନେଲେ ରୋଗର ପନରାକ୍ରମଣର ସମ୍ଭାବନା ରହେ ।

କାମଳ—

ରୋଗୀ ହଠାତ୍ ବିଛଣାରୁ ଉଠି, ଦୁର୍ବଳତା, ଅବସାଦ, କ୍ଷୁଧାହୀନତା ଓ ଶିରପୀଡ଼ା ଅନୁଭବ କରେ । ନିଜର ଚର୍ମ ଓ ଆଖିର ଧଳା ଅଂଶ ହଳଦିଆ ଦେଖାଯାଏ । ମଳର ବର୍ଣ୍ଣ ଧଳା, ସାମୟିକ ହଳଦିଆ, ମୂତ୍ର କଳା ଓ ପିତ୍ତଯୁକ୍ତ ଦେଖାଯାଏ । ରୋଗୀର ସ୍ଥଳ ବିଶେଷରେ କୋଷ୍ଠକାଠିନ୍ୟ, ସ୍ଥଳବିଶେଷରେ ପତଳା ମଳଭେଦ ଦେଖାଯାଏ । ନାଡ଼ୀର ଗତି କ୍ଷୀଣ ରହେ, ତନ୍ଦ୍ରାଭାବ ଅନୁଭବ କରେ । ପ୍ରାରମ୍ଭ ଅବସ୍ଥାରେ କାହାରି କାହାରି ଉତ୍ତାପ ବଢ଼ିଥାଏ । ଯକୃତ୍ ଅଞ୍ଚଳରେ ଭାରବୋଧ, ଅସ୍ୱସ୍ତିଭାବ ବୋଧ ହୁଏ ।

ବୃକ୍କ (କିଡ଼ନ)—

ଏହି ରୋଗରେ ସକାଳେ ଆଖିପତା ଫୁଲିଲା ପରି ଜଣାପଡ଼େ । ପାଦ ଗଣ୍ଠି ଫୁଲିଲା ପରି ଜଣାପଡ଼େ । ମୂତ୍ର ଅଳ୍ପତା ଦେଖାଯାଏ । କୌଣସି କୌଣସି ସ୍ଥଳରେ ଅଧିକ ମୂତ୍ରସ୍ରାବ ହୋଇଥାଏ । ମୂତ୍ର ପରୀକ୍ଷା ଦ୍ୱାରା ତହିଁରେ ଆଲବୁମିନ୍ ଥିବାର ଦେଖାଯାଏ । ରକ୍ତହୀନତା, ପୃଷ୍ଠପୀଡ଼ା, ମୁଣ୍ଡବିନ୍ଧା, କ୍ଷୁଧା ମାନ୍ଦ୍ୟ ଏହି ରୋଗରେ ଏକ ଅବଶ୍ୟମ୍ଭାବୀ ଲକ୍ଷଣ ।

ଅଧାକପାଳି ବିନ୍ଧା—

ଏହା ଏକ ପ୍ରକାର ବିଶେଷ ବେଦନା, ଯେଉଁ ସ୍ଥଳରେ ଦୃଷ୍ଟିଦୋଷ, ବାନ୍ତିଭାବ ଏବଂ ବାନ୍ତି ଦେଖାଯାଇଥାଏ । ଏହି ପୀଡ଼ା କାହାରି କାହାରି ଗୋଟିଏ ପାଳରେ, କାହାରି ଦୁଇ ପାଳରେ କାହାରି ଶ୍ରବଣାଦି ସ୍ଥଳରେ ଦେଖାଯାଇଥାଏ । ଏହି ପୀଡ଼ା

ଆକ୍ରମଣ କରିବା ପର୍ବରୁ ଅଙ୍ଗମର୍ଦ୍ଦ, ସାୟବିକ ପୀଡ଼ା ଦେଖାଯାଇଥାଏ । କେତେକ ଏ ଜାତୀୟ ରୋଗୀ ଶୋଇପଡ଼ିଲେ ଯନ୍ତ୍ରଣାମୁକ୍ତ ହୋଇଥାନ୍ତି । ବିଭିନ୍ନ ଲୋକର ପୀଡ଼ା ଭିନ୍ନ ଭିନ୍ନ ସମୟ ଅନ୍ତରରେ ହୋଇଥାଏ ।

ଅର୍ଶ—ବହିର୍ବଳି ଅର୍ଶ—

ଏଗୁଡ଼ିକ ଆକାରରେ କ୍ଷୁଦ୍ର । ଏଗୁଡ଼ିକ ଏକପ୍ରକାର ଚର୍ମଆସ୍ତରଣ ସଙ୍କୁଚିତ ହୋଇ ଶିରାସ୍ଫୀତି ଘଟାଇ ମଳଦ୍ୱାରକୁ ମାଡ଼ିଯାଏ । ଏହାଦ୍ୱାରା ଦାହ ଓ ସ୍ଥାନିକ ଉତ୍ତେଜନା ଜନ୍ମେ । ଯଦି ରକ୍ତ ସ୍ପନ୍ଦନ ହୁଏ, ଅର୍ଶବଳିଗୁଡ଼ିକ ଫୁଲିଯାଏ, ଯନ୍ତ୍ରଣା-ପ୍ରଦ ଓ ସ୍ପର୍ଶ ଅସହ୍ୟ ହୁଏ ।

ଅନ୍ତର୍ବଳୀ ଅର୍ଶ—

ଏପରି ଅବସ୍ଥାରେ ଅନ୍ତର୍ବଳି ଅଧୋମୁଖୀ ହୋଇଗଲେ ଅଣ୍ଡମଣ୍ଡଳିରେ ଭାରବୋଧ ଓ ଯନ୍ତ୍ରଣା ହୁଏ । ଏହି ଅବସ୍ଥାରେ ରକ୍ତସ୍ରାବ ହୁଏ—ଏପରି ସ୍ରାବ ଅବସ୍ଥା ଅଧିକ ଦିନ ଲାଗି ରହିଲେ ରକ୍ତହୀନତା ଦେଖାଦିଏ ।

ପକ୍ ରୋଗ (ରିକେଟ)—

ଏହା ସାଧାରଣତଃ ଶିଶୁମାନଙ୍କୁ ଆକ୍ରମଣ କରିଥାଏ । ଏହି ଅବସ୍ଥାର ପ୍ରାଥମିକ ଲକ୍ଷଣ ହେଲା, ରୋଗୀ ରାତିରେ ବିଶେଷ ଅଶ୍ୱସ୍ତି ଭାବ ଅନୁଭବ କରେ । ମୁଣ୍ଡରୁ ବେଶି ଝାଳ ବହେ । ମଣ୍ଡତଳ ତକିଆ ଝାଳରେ ଓଦା ହୋଇଯାଏ । ଶିଶୁ ଚିଡ଼ିଚିଡ଼ା ପ୍ରକୃତିର ହୋଇଯାଏ । ଶିଶୁର ଅସ୍ଥିର ଅଗ୍ରଭାଗ ଅପେକ୍ଷାକୃତ ମୋଟା ହୋଇଯାଏ । ଦାନ୍ତ ଉଠିବାରେ ଡେରି ହୁଏ, ପେଟଟା ଅସ୍ୱାଭାବିକ ଭାବରେ ବଢ଼ି ଉଠେ । ଶିଶୁ ଯଦି ଚାଲିବା ଆରମ୍ଭ କରିଥାଏ । ତାହା ହେଲେ ଚାଲିବା ଡେରି ହୋଇଯାଏ । ଗୋଡ଼ର ହାଡ଼ ବଙ୍କା ବା ବିକୃତ ହୋଇଯାଏ ।

ପାମା (ଏକ୍‌ଜିମା) -

ଏକ୍‌ଜିମା ଅର୍ଥ ଏକ ପ୍ରକାର ଚର୍ମ ସ୍ଫୀତି । ଏହି ରୋଗରେ ଚମଡ଼ା ରକ୍ତାଭ ଓ ଅଙ୍କୁରିକାବହୁଳ ଯୁକ୍ତ ହୋଇଥାଏ । ସମୟକ୍ରମେ ଉକ୍ତ ଅଙ୍କୁରିକାଗୁଡ଼ିକ ଫାଟିଯାଏ । ପଚ ବାହାରେ, ଉପରେ ପୂଜ ଲାଗି ରହେ । ଶେଷରେ ଘା ସ୍ଥାନରେ ଏକ ଆସ୍ତରଣ ଜମିଯାଏ; ପୂଜ ସ୍ରାବ କମିଯାଏ । ଏହି ଅବସ୍ଥାରେ ଆକ୍ରାନ୍ତ ସ୍ଥାନ ବରାବର କୁଣ୍ଡାଇ ହୁଏ । ଏହାଦ୍ୱାରା ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନ ଆକ୍ରାନ୍ତ ହୁଏ ।

ଯାଦୁ–

ଏହା ଶରୀରର ଯେ କୌଣସି ସ୍ଥାନକୁ ଆକ୍ରମଣ କରିଥାଏ । ଏହା ପ୍ରଥମେ ଗୋଟିଏ ଚକଡ଼ାରେ ଆରମ୍ଭ ହୋଇଥାଏ । ତାପର ତାହା ବଢ଼ି ବଢ଼ି ମଣ୍ଡଳାକାର ଧାରଣ କରେ । ସମୟ ସମୟରେ ଏହା ମୁଣ୍ଡରେ ହୁଏ । ମୁଣ୍ଡର ବାଳ ପତଳା ହୋଇଯାଏ । ଯାଦୁ ଦାଢ଼ି, କାଖ ସନ୍ଧି, ଶିଶୁ ସନ୍ଧିସ୍ଥଳରେ ଦେଖା ଦେଇଥାଏ ।

କାଛୁ କୁଣ୍ଡିଆ–

ଏହା ଏକ ସାଧାରଣ ରୋଗ । ଏହି ରୋଗରେ ରାତିରେ ବେଶି କୁଣ୍ଡାଇ ହୁଏ । ଆକ୍ରାନ୍ତ ସ୍ଥାନ ବାରମ୍ବାର କୁଣ୍ଡାଇ ହେବା ଦ୍ୱାରା ଫୁଲିଯାଏ ।

ସୋରିଆସିସ୍–

ଏହି ରୋଗରେ ଏକ ପ୍ରକାର ରୁପେଲି ଶରୀରର ଯେକୌଣସି ସ୍ଥାନରେ ଦେଖାଯାଇଥାଏ ।

ଶୀତପିତ୍ତ–

ଏହି ରୋଗରେ ଚମଡ଼ା ଉପର ଫଳି ଫଳି ଯାଏ । ଆକ୍ରାନ୍ତ ସ୍ଥାନ କୁଣ୍ଡାଇ ହୁଏ । ଏହା ଶରୀରର ବିଭିନ୍ନ ଅଂଶରେ ହୋଇଥାଏ ।

ଜଠରକ୍ଷତ (ଗ୍ୟାଷ୍ଟ୍ରିକ୍ ଅଲ୍‌ସର)–

ଖାଇବାର ଘଣ୍ଟାଏ ଦୁଇଘଣ୍ଟା ପରେ ଅଧିଜଠରାଞ୍ଚଳରେ ତୀବ୍ର ବେଦନା ଜନ୍ମେ । ଖାଇବା ଜିନିଷ ବାନ୍ତି ହୋଇ ପଡ଼ିବା ପରେ ଯନ୍ତ୍ରଣା କମେ । କାହାରି କାହାରି ବାନ୍ତିରେ ରକ୍ତ ପଡ଼େ । ପେଟରେ ସାଧାରଣତଃ ହାତ ଦେଲେ ରୋଗୀ ଅସହ୍ୟ ହୋଇ ପଡ଼େ । ବିଶେଷତଃ ରୋଗୀର ଅଧିଜଠର ଅଞ୍ଚଳରେ ଚାପ ଦେଲେ ଉପରୋକ୍ତ ଲକ୍ଷଣ ଅନୁଭୂତ ହୁଏ ।

## ଗ୍ରହଣୀକ୍ଷତ –

ଏହି ରୋଗରେ ରୋଗର ଯନ୍ତ୍ରଣା, ରାତ୍ରିର ଏକ ନିର୍ଦ୍ଦିଷ୍ଟ ସମୟରେ ଦେଖାଦିଏ । ନାଭିର ଡାହାଣ ଭାଗରେ ସ୍ପର୍ଶକାତରତା ବିଶେଷ ଜଣାପଡ଼େ । ଏହି ରୋଗରେ ସାମାନ୍ୟ କିଛି ଖାଇଦେଲେ ରୋଗ ଯନ୍ତ୍ରଣା କମି ଯାଇଥାଏ ।

## ଜଠରପ୍ରଦାହ (ଗ୍ୟାଷ୍ଟ୍ରାଇଟିସ୍)–

ଏହି ଅବସ୍ଥାରେ ସାଧାରଣତଃ ଶୂଳ, ବାନ୍ତିଭାବ, ବାନ୍ତି ଓ ସ୍ଥଳବିଶେଷରେ ତରଳମଳ ଭେଦ ଦେଖାଯାଇଥାଏ । ବାନ୍ତିରେ ପ୍ରଚୁର ଜଳ ଓ ସମୟ ସମୟରେ ରକ୍ତ ଦାଗ ଦେଖାଯାଇଥାଏ । ଏହି ରୋଗରେ ମଧ୍ୟ ଜ୍ୱରଭାବ ରହିପାରେ ।

## ତରଳ ମଳଭେଦ–

ଏହି ଅବସ୍ଥାରେ ଅସ୍ୱାଭାବିକ ତରଳ ମଳଭେଦ ହୋଇଥାଏ । ଏହି ଅବସ୍ଥାଟି ବହୁ କାରଣରୁ ହୋଇଥାଏ । ବିଶେଷ କରି ଅନ୍ତ୍ର କ୍ଷୀତି ହେତୁ ଏହା ହୋଇଥାଏ । ବିଶେଷତଃ ଅପରିପକ୍ୱ ଖାଦ୍ୟ, ସ୍ନାୟବିକ ଦୁର୍ବଳତା, ତୀବ୍ର ଜ୍ୱର ହେତୁ ହୋଇଥାଏ । ଖରାଦିନେ ଏହି ରୋଗ ବିଶେଷ ଭାବରେ ଦେଖାଯାଇଥାଏ । ପୁରାତନ ତରଳମଳ ଭେଦ ଆନ୍ତ୍ରିକ ଯକ୍ଷ୍ମା ବା କ୍ୟାନସର ଆକ୍ରମଣ ଯୋଗୁଁ ହୋଇଥାଏ ।

## ଆମାଶୟ–

ଏହା ଏକ ପ୍ରକାର ତରଳ ମଳଭେଦ । ମଳ ସଙ୍ଗରେ ଆମ ଓ ରକ୍ତ ମଧ୍ୟ ନିର୍ଗତ ହୋଇଥାଏ । ତଳିପେଟରେ ଯନ୍ତ୍ରଣା ଜ୍ୱର, ଅତ୍ୟଧିକ ତୃଷା, ମୁଣ୍ଡବ୍ୟଥା ପ୍ରଭୃତି ଲକ୍ଷଣ ପ୍ରକାଶ ପାଇଥାଏ ।

## ଉଣ୍ଡୁକପୁଚ୍ଛ ପ୍ରଦାହ (ଆପେଣ୍ଡିସାଇଟିସ୍) –

ଏହି ରୋଗର ପ୍ରାରମ୍ଭ ଅବସ୍ଥାରେ ନାଭି ଅଞ୍ଚଳରେ ଅସ୍ୱାଭାବିକ ଯନ୍ତ୍ରଣା ଅନୁଭବ ହୁଏ । ପରେ ଏହା ନାଭିର ଡାହାଣ ଭାଗରେ ସ୍ଥିର ହୋଇଯାଏ । ଏହି ଅବସ୍ଥାରେ କୋଷ୍ଠକାଠିନ୍ୟ, ତରଳ ମଳଭେଦ, ଜ୍ୱର ଲକ୍ଷଣ ମଧ୍ୟ ପ୍ରକାଶ ପାଇଥାଏ । ଉଣ୍ଡୁକ ପୁଚ୍ଛ ସ୍ଥଳରେ ସ୍ପର୍ଶକାତରତା, ପେଶୀଶକ୍ତତା ଦେଖାଦିଏ ।

ତୁଣ୍ଡିକେରି (ଟନ୍‌ସିଲ୍‌ଇଟିସ୍) -

ଏହି ରୋଗରେ ଗିଳିବାରେ କଷ୍ଟ ହୁଏ । ଉତ୍ତାପମାତ୍ରା ଅଧିକ ବୃଦ୍ଧି ପାଇପାରେ । ଜିଭରେ ବହୁଳ ପରିମାଣରେ ଛତିଆ ଜମିଥାଏ । ଗଳଗ୍ରନ୍ଥି ଫୁଲିଯାଏ, ପାଟିରୁ ଗନ୍ଧ ବାହାରେ ।

ଗନୋରିୟା (ଔପସର୍ଗିକ ମେହ)–

ମୂତ୍ରନଳୀ ଏହି ରୋଗରେ ଫୁଲିଯାଏ । ପରିସ୍ରା କରିବା ସମୟରେ ତୀବ୍ର ଯନ୍ତ୍ରଣା ଅନୁଭୂତ ହୁଏ । ପ୍ରଥମେ ମୂତ୍ରନଳୀରୁ ପତଳା ସ୍ରାବ ହୁଏ, କ୍ରମଶଃ ତାହା ଘନ ହୁଏ । ରୋଗର ଜୀବାଣୁ ରକ୍ତ ପ୍ରବାହକୁ ସଂକ୍ରମିତ ହେଲେ ସାଧାରଣତଃ ରକ୍ତପ୍ରବାହକୁ ବିଷାକ୍ତ କରିଦିଅନ୍ତି । ଏହି ଅବସ୍ଥାରେ ସନ୍ଧିସ୍ଥଳ ଓ ପେଶୀ ସ୍ଥାନରେ ତୀବ୍ର ବେଦନା ଅନୁଭୂତ ହୁଏ । ଏହି ରୋଗର ଆକ୍ରମଣ ସ୍ତ୍ରୀମାନଙ୍କୁ ହେଲେ ଏହା ଜରାୟୁ ଓ ଡିମ୍ବବାହୀ ନଳୀକୁ ସଂକ୍ରମିତ ହୋଇଥାଏ ।

ଗରମି (ସିଫିଲିସ୍) -

ଏହି ରୋଗର ଜୀବାଣୁ ଶରୀରରେ ପ୍ରବେଶ କରିବା ମାତ୍ରେ ଶରୀରରେ ନାଲି ଚିହ୍ନ ଦେଖାଯାଏ, ଆକ୍ରାନ୍ତ ସ୍ଥାନ କୁଣ୍ଡାଇ ହୁଏ । କ୍ରମଶଃ ସେ ସ୍ଥାନଗୁଡ଼ିକ ଶକ୍ତ ହୋଇଯାଏ । ଗ୍ରନ୍ଥିଗୁଡ଼ିକ ଶକ୍ତ ହେବାକୁ ଲାଗେ । ଏହି ଅବସ୍ଥାଟିକୁ ପ୍ରାଥମିକ ଅବସ୍ଥା କୁହାଯାଏ । ପାଞ୍ଚ ବା ଆଠ ସପ୍ତାହ ପରେ ରୋଗୀ ଦ୍ୱିତୀୟ ଅବସ୍ଥାରେ ଉପନୀତ ହୁଏ । ଏହି ଅବସ୍ଥାରେ ନାଲି ଚିହ୍ନଗୁଡ଼ିକ ଲସିକା ଗ୍ରନ୍ଥିଗୁଡ଼ିକୁ ସ୍ଫୀତ କରିଦିଏ । ଗଳାକ୍ଷତ, ଜ୍ୱର, ଅଶ୍ୱସ୍ତିଭାବ, କେଶପାତ ପ୍ରଭୃତି ଲକ୍ଷଣ ଦେଖାଯାଏ ।

ରୋଗର ତୃତୀୟ ଅବସ୍ଥା ଶରୀରର ଗଭୀର ଅଞ୍ଚଳକୁ ଆକ୍ରାନ୍ତ କରିଥାଏ । ଏହାଦ୍ୱାରା ସ୍ନାୟୁ ମଣ୍ଡଳୀ ମଧ୍ୟ ଆକ୍ରାନ୍ତ ହୋଇଥାଏ ।

---

# ॥ ସୂଚୀ ॥

## ୪ର୍ଥ ଭାଗ

## ବର୍ଣ୍ଣାନୁକ୍ରମିକ ବିଷୟ ଓ ରୋଗ ସୂଚୀ

(ଅ)



(ଆ)



(ଉ)



(ଏ)



(ଓ)



(କ)



(ଗ)

---

